# ଭଞ୍ଜ ସ୍ମରଣିକା

## ଦ୍ୱାବିଂଶ ଅର୍ଘ୍ୟ

## ୧୯୯୧

ସମ୍ପାଦନା :

**ଶ୍ରୀ ସଙ୍କର୍ଷଣ ପଣ୍ଡା**

**ଶ୍ରୀ ସୁଧାକର ପାତ୍ରୀ**



ଆଦର୍ଶ ପାଠାଗାର

ଓ

ଭଞ୍ଜ କଲଚରାଲ ଟ୍ରଷ୍ଟ

ଭଞ୍ଜ ନଗର

ବି/୧୪, ସେକ୍ଟର-୧୮

ରାଉରକେଲା-୭୬୯୦୦୩

ମୁଦ୍ରଣ :

**ପାରିଜାତ ଅଫ୍‌ସେଟ୍ ପ୍ରେସ୍ (ପ୍ରାଃ) ଲିଃ**

୮୭, ମହାତ୍ମାଗାନ୍ଧୀ ରୋଡ

ରାଉରକେଲା-୭୬୯୦୧୧

ଫୋନ୍ ୩୭୬୬, ୫୩୬୩

# BHANJA SMARANIKA

**22ND ISSUE**

**1991**

*EDITED BY :*

SRI SANKARSAN PANDA
SRI SUDHAKAR PADHI

**ADARSHA PATHAGAR**

and

**Bhanja Cultural Trust**

**BHANJA NAGAR**

**A/14, SECTOR - 18,**

**ROURKELA - 769003**

*Printed at :*

PARIJAT OFFSET PRESS ( P ) LTD

**87, Mahatma Gandhi Road**

**R O U R K E L A - 769011**

Phone - 3767/5363

# Office Bearers of BHANJA CULTURAL TRUST

( Founded by ADARSHA PATHAGAR )

| | |
|---|---|
| Chairman | Dr. S. K. Gupta, MD, RSP, Rourkela |
| Adviser | Sri M. C. De Tarafdar, Ex-MD, RSP, Rourkela |
| Secretary | Sri Ghanashyam Khuntia, GM ( M & Q ) RSP President, Adarsha Pathagar. |
| Treasurer | Sri Ghanashyam Swain |
| Members | Sri A. K. Tripathy, I A S, A D M, Rourkela |
| | Dr. Somanath Mishra, Principal, REC |
| | Sri K. P. Jhunjhunwala, MD, ORIND |
| | Sri B. C. Pati, Vice-President, IDL |
| | Sri N. K. Agarwal, President, RCC & I |
| | Sri M. K. Lahiri, GM ( MM ), RSP |
| | Sri S. Mishra, GM ( Projects ) RSP |
| | Dr. U. K. Behera, Chief Engineer ( Projects ) |
| | Sri S. Padhi, Chief Supdt, TID, RSP |
| | Sri Sankarsan Panda, Jr. Chemist Genl. Secretary, Adarsha Pathagar |

# Office Bearers of Adarsha Pathagar for the Year, 1991-92

Following Office Bearers of Adarsha Pathagar have been elected by General Body Meeting.

| | |
|---|---|
| Advisor | Dr. Umakanta Behera, Chief Engineer ( P ) |
| | Dr. A. K. Panda, Superintendent |
| | Sri Subhadra Kar, Superintendent |
| President | Sri Ghanashyam Khuntia, G.M. |
| Vice-President | Sri Sudhakar Padhi, Chief Superintendent |
| | Sri Ashis Das, AGM. |
| | Sri B. B. Mohanty, Superintendent |
| General Secretary | Sri Sankarsan Panda, Jr. Chemist |
| Joint Secretary | Sri Radhashyam Rout, Supervisor |
| Treasurer | Sri Bara Pitter, Sr. Asstt. |
| Chief Librarian | Sri Chira Kumar Pati, Asst. Roller |
| Librarian | Sri R. N. Patra, Jr. Chemist |
| | Sri Umesh Mohanty, Operator |
| Asstt. Librarian | Sri P. C. Rout |
| | Sri P. K. Raj (Nominated) Electronic Technician |

## EXECUTIVE MEMBERS :

Sri D. N. Mohanty, Ex. H.I.T.
Sri Basudev Panda, Asstt. Manager
Sri P. K. Parija, Asstt. Manager
Sri H. K. Dash, Chief Chemist
Sri Ghanashyam Swain, Ex. Sr. Chemist
Sri N. Tripathy, Sr. Terminal Operator
Sri A. K. Behera, Superintendent
Sri K. Bishoyee, Superintendent
Sri B. C. Parida, Ex. Sr. Chemist
Sri P. C. Biswal, Terminal Operator
Sri P. C. Satpathy, Supervisor
Sri H. P. Mohapatra, Superintendent

ଯେଉଁ ମାନଙ୍କ ସାହଯ୍ୟ ଓ ସହଯୋଗରେ

# ଆଦର୍ଶ ପାଠାଗାର ଓ ଭଞ୍ଜ ଭବନ ସମୃଦ୍ଧ

## ସଭାପତି, ସମ୍ପାଦକ ଓ ମୁଖ୍ୟ ଗ୍ରନ୍ଥାଗାରିକ ବୃନ୍ଦ

## ୧୯୫୮ ୧୯୯୨

| ବର୍ଷ | ସଭପତି | ସମ୍ପାଦକ | ମୁଖ୍ୟ ଗନ୍ଥାଗାରିକ |
|---|---|---|---|
| ୧୯୫୮- | ଆର୍ ଏନ୍ ଦାସ | ନାରାୟଣ ସାମନ୍ତ | ପି ଆର ଦାସ |
| ୧୯୫୯- | ,, | ,, | ଜି ଏସ୍ ସ୍ୱାଇଁ |
| ୧୯୬୦-୬୧ | ଆର ଆର ଦୁବେ | ,, | ନାରାୟଣ ସାମନ୍ତ |
| ୧୯୬୧- | ,, | ,, | ,, |
| ୧୯୬୨- | ,, | ବାସୁଦେବ ପାତ୍ର | ଚିତ୍ତ ସାମନ୍ତ |
| ୧୯୬୩- | ,, | ଶ୍ରୀ ରଥ | ,, |
| ୧୯୬୪ | ପ୍ରଶାନ୍ତ କୁମାର ରଥ | ଭରତ ଚନ୍ଦ୍ର ପରିଡା | ଜି ଏସ୍ ସ୍ୱାଇଁ |
| ୧୯୬୫- | ,, | ,, | କେସି ପରିଡା |
| ୧୯୬୬- | ଶଙ୍କର ପୁରୋହିତ | ବନମାଳୀ ପଲାଇ | |
| ୧୯୬୭- | ,, | ,, | |
| ୧୯୬୮ | ଆର ବି ପଟ୍ଟନାୟକ | ରମେଶ ଚନ୍ଦ୍ର ପାଢ଼ୀ | ସଙ୍କର୍ଷଣ ପଣ୍ଡା |
| ୧୯୬୯- | କୃଷ୍ଣ ଚନ୍ଦ୍ର ରଥ | ବନମାଳୀ ପଲାଇ | |
| ୧୯୭୦- | ,, | ରମେଶ ଚନ୍ଦ୍ର ପାଢ଼ୀ | |
| ୧୯୭୧- | ,, | ସୁଧାକର ପାଢ଼ୀ | ଚିତ୍ତ କୁମାର ପତି |
| ୧୯୭୨- | ,, | ,, | ଏ ସି ସାମଲ |
| ୧୯୭୩- | ,, | ,, | ବାଉରୀ ବନ୍ଧୁ ସାହୁ |
| ୧୯୭୪- | ,, | ନିର୍ମଳ ଚନ୍ଦ୍ର ମହାନ୍ତ | ,, |
| ୧୯୭୫- | ,, | ,, | ଉମେଶ ଚନ୍ଦ୍ର ମହାନ୍ତ |
| ୧୯୭୬- | କୃଷ୍ଣ ଚନ୍ଦ୍ର ରଥ | ଅଶୋକ ପଟ୍ଟନାୟକ | ସଙ୍କର୍ଷଣ ପଣ୍ଡା |
| ୧୯୭୭- | ,, | ,, | ,, |

| | | |
|---|---|---|
| ୧୯୭୮-କୃଷ୍ଣଚନ୍ଦ୍ର ରଥ | ସୁଭଦ୍ର କର | ସଙ୍କର୍ଷଣ ପଣ୍ଡା |
| ୧୯୭୯-କୃଷ୍ଣଚନ୍ଦ୍ର ରଥ | ଦେବେନ୍ଦ୍ର ନାଥ ମହାନ୍ତ | ସଙ୍କର୍ଷଣ ପଣ୍ଡା |
| ୧୯୮୦-ରବୀନ୍ଦ୍ର ନାଥ ଦାସ | ସୁଭଦ୍ର କର | ଚିର କୁମାର ପତି |
| ୧୯୮୧-ଡଃ ଉମାକାନ୍ତ ବେହେରା | ବାସୁଦେବ ପଣ୍ଡା | ନୃସିଂହ ପ୍ରସାଦ ପଣ୍ଡା |
| ୧୯୮୨-ସଚ୍ଚିଦାନନ୍ଦ ମିଶ୍ର | ପ୍ରଫୁଲ୍ଲ କୁମାର ପରିଡ଼ା | ଚିର କୁମାର ପତି |
| ୧୯୮୩- ,, | ,, | ,, |
| ୧୯୮୪-ରତ୍ନାକର ମିଶ୍ର | ଅରବିନ୍ଦ ମିଶ୍ର | ପ୍ରଫୁଲ୍ଲ କୁମାର ମହାନ୍ତ |
| ୧୯୮୫-ସୁଭଦ୍ର କର | ପ୍ରଫୁଲ୍ଲ କୁମାର ପରିଡ଼ା | ,, |
| ୧୯୮୬-ଘନଶ୍ୟାମ ଖୁଣ୍ଟିଆ | ସଙ୍କର୍ଷଣ ପଣ୍ଡା | ଚିର କୁମାର ପତି |
| ୧୯୮୬- ,, | ,, | ,, |
| ୧୯୮୮- ,, | ,, | ,, |
| ୧୯୮୯- ,, | ,, | ,, |
| ୧୯୯୦- ,, | ,, | ,, |
| ୧୯୯୧- ,, | ,, | ,, |



# ନିଜ ସଂପର୍କରେ ପଢେ–

**ଆଦର୍ଶ ପାଠାଗାର** :— ଆଜିକୁ ୩୩ ବର୍ଷ ଧରି ରାଉରକେଲା ଇସ୍ପାତ ନଗରୀରେ ତା'ର ସ୍ଥାନ ସୁଦୃଢ କରି ରାଉରକେଲା ତଥା ଓଡ଼ିଶାରେ ସୁପରିଚିତ ହୋଇପାରିଛି । ଏହି ପାଠାଗାରର କାର୍ଯ୍ୟକ୍ରମକୁ ବିଶ୍ଳେଷଣ କଲେ ଜଣାପଡେ ଯେ ଏହି ପାଠାଗାର ସବୁ କ୍ଷେତ୍ରରେ, ବିଶେଷ କରି ସାଂସ୍କୃତିକ, କଳା, ସାହିତ୍ୟ କ୍ଷେତ୍ରରେ ପ୍ରଭାବିତ କରି ଚାଲିଛି ।

୧) ରାଉରକେଲା, ଓଡ଼ିଶା ତଥା ଓଡ଼ିଶା ବାହାରରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ପାଠାଗାରର ଭଂଜ-କଳାକେନ୍ଦ୍ର ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରି ଓଡ଼ିଶାର ସଂସ୍କୃତି ଓ କଳାର ମହାତ୍ମ୍ୟକୁ ବିକାଶ କରି ଚାଲିଛି ।

୨) ପାଠାଗାରର ବିଭିନ୍ନ ରୁଚିର ଯଥେଷ୍ଟ ପୁସ୍ତକ ଶୋଭା ବର୍ଦ୍ଧନ କରୁଥିବାରୁ, ରାଉରକେଲାର ଶ୍ରମିକ-ମାନଙ୍କର କଠିନ ପରିଶ୍ରମକୁ ଲାଘବ କରି ପାରିଛି । ଅବସର ପ୍ରାପ୍ତ କର୍ମଚାରୀମାନଙ୍କୁ କର୍ମ ମୁଖର କରିପାରିଛି । ଛାତ୍ର, ଶିକ୍ଷକ, ଗବେଷକ ଓ ବୁଦ୍ଧିଜୀବୀ ମାନଙ୍କୁ ଆକର୍ଷିତ କରି ତାଙ୍କର ଜ୍ଞାନର ପରିସୀମାକୁ ବଢାଇ ଏକ ସୁସ୍ଥ ସମାଜ ଗଢିବାରେ ସହାୟତା କରିପାରୁଛି । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଛାତ୍ରମାନେ ପ୍ରତ୍ୟେକ ବର୍ଷ ଆସି ଏହି ପାଠାଗାରର ପୁସ୍ତକଗୁଡକ ସହାୟତାରେ ଗବେଷଣା କରିବାରେ ଲାଗିଛନ୍ତି ।

୩) ପାଠାଗାର ଆନୁକୂଲ୍ୟରେ ପ୍ରତ୍ୟେକ ବର୍ଷ ଭଂଜ ଜୟନ୍ତୀ, ଗୋପବନ୍ଧୁ ଜୟନ୍ତୀ, ବିଷୁବ ମିଳନ ଓ କବି ସମ୍ମିଳନୀ, ପାଳନ କରି ଏକ ଅପୂର୍ବ ବାତାବରଣ ସୃଷ୍ଟିକରି ମାନବ ଜାତିକୁ ଏକ ନୂତନ ଆଲୋକ ଦେଖାଇ ଆଗେଇ ନେବାରେ ସର୍ବଦା ଚେଷ୍ଟିତ ଅଛି ।

୪) ଛାତ୍ରମାନଙ୍କ ମଧ୍ୟରେ ପ୍ରତ୍ୟେକ ବର୍ଷ ପ୍ରବନ୍ଧ, କବିତା ଓ ବକ୍ତୃତା ପ୍ରତିଯୋଗିତା କରାଇ ବିଜୟୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ବିତରଣ କରି ଉତ୍ସାହିତ କରି ସେମାନଙ୍କ ମଧ୍ୟରୁ ଗୋପବଂଧୁ, ମହାତ୍ମା ଗାନ୍ଧୀ ଓ କବି ସମ୍ରାଟ ଉପେନ୍ଦ୍ର ଭଂଜଙ୍କୁ ଖୋଜି ଚାଲିଛି । ଏହିପରି ଦିନେ ଏ ସମାଜକୁ ସେମାନଙ୍କ ମଧରୁ କେହି ଜଣେ ଗୋପବଂଧୁ, ମହାତ୍ମା ଗାନ୍ଧୀ କି କବି ସମ୍ରାଟ ହୋଇ ଆସିବାର ଆଶା ପୋଷଣ କରିଛି ।

୫) ଆଦର୍ଶ ପାଠାଗାର ଇସ୍ପାତ ନଗରୀ ରାଉରକେଲାର ମଧ୍ୟସ୍ଥଳୀରେ ତୋଳିଛି ଭଂଜ ଭବନ । ସାଂସ୍କୃତିକ କ୍ଷେତ୍ରରେ ଭଂଜ ଭବନ ଏକ ବତୀଖୁଣ୍ଟ । ଏହି ବତୀଖୁଣ୍ଟ ତଳେ ରାଉରକେଲାର ସବୁ

ଧର୍ମ, ସବୁଜାତି, ସବୁ ଗୋଷ୍ଠୀ ନିର୍ବିଶେଷରେ ସେମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରନ୍ତି । ଧର୍ମ ଚର୍ଚ୍ଚା, ପୂଜା ଆରାଧନା କରନ୍ତି । ଏହି ଭଂଜ ଭବନ ସବୁ ଭାରତୀୟଙ୍କୁ ଏକତା ଡୋରୀରେ ବାନ୍ଧି ରଖିଛି ।

ଗଡ଼ବଡ଼କେଲ ବାସୀ ଓ ପାଠାଗାରର କର୍ମକର୍ତ୍ତାଙ୍କ ଶୁଭେଚ୍ଛା, ସାହାଯ୍ୟ ଓ ସହଯୋଗ ଫଳରେ ପାଠାଗାର ଓ ଭଂଜ ଭବନର କଳେବର ବୃଦ୍ଧି ହେବାରେ ଲାଗିଛି । ଏହି ଅନୁଷ୍ଠାନ ଦ୍ୱୟକୁ ପୂର୍ଣ୍ଣାଙ୍ଗ କରିବାକୁ ହେଲେ ମୁକ୍ତ ହସ୍ତରେ ଆର୍ଥିକ ସାହାଯ୍ୟ ଦରକାର । ସରକାରଙ୍କ ଦୃଷ୍ଟି ବହୁବାର ଆକର୍ଷଣ କରଯାଇ ହତାଶ ହେବାକୁ ପଡ଼ୁଛି ।

## ପାଠାଗାରର ସଂକ୍ଷିପ୍ତ ବିବରଣୀ :—

ପାଠାଗାରର ବହି ସଂଖ୍ୟା ୧୭୫୦୦ କୁ ବୃଦ୍ଧି ପାଇଛି । ଏହା ମଧ୍ୟରେ ଇଂରାଜୀ ଓ ଓଡ଼ିଆ ପୁସ୍ତକ ମୁଖ୍ୟତଃ ଅଛି । ଏହି ଦୁଇ ଭାଷାରେ ଉପନ୍ୟାସ, ଡିଟେକ୍‌ଟିଭ୍, ନାଟକ, କବିତା, ପୁରାଣ, ଭ୍ରମଣ କାହାଣୀ, ଇତିହାସ, ସମାଲୋଚନା ସାହିତ୍ୟ, ପ୍ରବନ୍ଧ, ଶିଶୁ ସାହିତ୍ୟ, ଜ୍ଞାନ ବିଜ୍ଞାନ, ପତ୍ର ପତ୍ରିକା ଓ ଅନ୍ୟାନ୍ୟ ବହି ସବୁର ସ୍ୱତନ୍ତ୍ର ବିଭାଗ କରି ରଖାଯାଇଛି । ଲାଇବ୍ରେରୀଅନ୍ ଅବୈତନିକ ଭାବେ ନିଷ୍ଠାର ସହ କର୍ତ୍ତବ୍ୟ କରି ସଭ୍ୟମାନଙ୍କ ସହିତ ସୁସଂପର୍କ ରଖିବା ସଙ୍ଗେ ସଙ୍ଗେ ପୁସ୍ତକ ଗୁଡ଼ିକର ଉପଯୁକ୍ତ ଯତ୍ନ ନିଅନ୍ତି । ପାଠାଗାରର ଦୈନିକ କାର୍ଯ୍ୟକ୍ରମରେ ଶ୍ରୀ ମୁକ୍ତ ଚିର କୁମାର ପତି, ଶ୍ରୀ ଉମେଶ ମହାନ୍ତି, ଶ୍ରୀ ରଘୁନାଥ ପାତ୍ର ଓ ଶ୍ରୀ ପି. ସି ରାଉତ ଏତେ ଅଭିଜ୍ଞ ଓ ନିପୁଣ ଯେ ସେମାନଙ୍କର ପରିଶ୍ରମ, ନିଷ୍ଠା ଓ ତ୍ୟାଗର ତୁଳନା କରି ହେବ ନାହିଁ ।

ଦୀର୍ଘ ଦିନଧରି ସରକାରୀ ଓ ବେସରକାରୀ ସାହାଯ୍ୟ ଏ ଅନୁଷ୍ଠାନ ନ ପାଇ ଆଶାନୁରୂପ ଉନ୍ନତି ପଥରେ ବାଧା ସୃଷ୍ଟି ହେଉଛି । ସରକାର ଯଦି ଏହିପରି ଭାବରେ ସାଂସ୍କୃତିକ ଅନୁଷ୍ଠାନ ପ୍ରତି ଉଦାସୀନ ରୁହନ୍ତି ତେବେ କୌଣସି ଅନୁଷ୍ଠାନ ଉଧେଇ ପାରିବ ନାହିଁ । ବହୁ ଅନୁଷ୍ଠାନ ଧୂଳିରେ ମିଶି ଯାଉଛି । ତେଣୁ ଉଦୀୟମାନ ଯୁବକମାନଙ୍କୁ ସର୍ବଦା ସ୍ୱାଗତ କରୁଛି । ଏ ପରିସ୍ଥିତିର ଉପଯୁକ୍ତ ମୁକାବିଲା କରିବା ପାଇଁ ଯୁବକ ସମାଜର ସାହାଯ୍ୟ ସହଯୋଗ ଏକାନ୍ତ ଆବଶ୍ୟକ !

## ଭଂଜ ଜୟନ୍ତୀ :—

୨୦ । ୫ । ୯୦ ତାରିଖରେ ଭଂଜ ଭବନଠାରେ ଭଂଜ ଜୟନ୍ତୀ ଉତ୍ସବ ମହା-ସମାରୋହରେ ପାଳନ କରାଯାଇ ଥିଲା । ଭଂଜ କଳାକେନ୍ଦ୍ର ପ୍ରାରମ୍ଭିକ ସଂଗୀତ ଗାନ କରିଥିଲେ ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ । ପାଠାଗାରର ସଭାପତି — ଶ୍ରୀ ଘନଶ୍ୟାମ ଖୁଣ୍ଟିଆ ସଭାପତିତ୍ୱ କରିଥିଲେ । ନିମାପଡ଼ା କଲେଜର ଅଧ୍ୟକ୍ଷ ଡକ୍ଟର ଲକ୍ଷ୍ମଣ କୁମାର ପରିଡ଼ା ମୁଖ୍ୟ ବକ୍ତା ଭାବେ ଯୋଗଦାନ କରିଥିଲେ । ଏହି ଉତ୍ସବରେ ଭଂଜ ସ୍ମରଣିକା ଉନ୍ମୋଚନ କରଯାଇଥିଲା ଓ ଗୋପବନ୍ଧୁ ଜୟନ୍ତୀ

ଉପଲକ୍ଷେ ହୋଇଥିବା ପ୍ରତି-ଯୋଗିତାର ବିଜୟୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ବିତରଣ କରଯାଇଥିଲା । ପାଠାଗାରର ସାଧାରଣ ସଂପାଦକ ଶ୍ରୀ ସଙ୍କର୍ଷଣ ପଣ୍ଡା ସଭପତି, ମୁଖ୍ୟବକ୍ତା, କଳାକାର, ଦର୍ଶକ, ସାହାଯ୍ୟକାରୀମାନଙ୍କୁ ଧନ୍ୟବାଦ ଦେଇଥିଲେ ।

## ଗୋପବଂଧୁ ଜୟନ୍ତୀ :—

୯ । ୧୦ । ୯୦ ତାରିଖ ଦିନ ଗୋପବଂଧୁ ଜୟନ୍ତୀ ସୁପରମାର୍କେଟ୍‌ସ୍ଥିତ ଗୋପବଂଧୁଙ୍କ ପ୍ରତିମୂର୍ତ୍ତି ନିକଟରେ ପାଳନ କରଯାଇଥିଲା । ଶ୍ରୀ ଘନଶ୍ୟାମ ଖୁଣ୍ଟିଆ ସଭପତିତ୍ୱ କରିଥିଲେ । ଶ୍ରୀ ସୁଧାକର ପାଢୀ ଗୋବବନ୍ଧୁଙ୍କ ବିଷୟରେ ଉଦ୍‌ବୋଧନ ଦେଇଥିଲେ । ଭଂଜ କଳା କେନ୍ଦ୍ରର ଛାତ୍ର, ଛାତ୍ରୀ ଓ ଶିକ୍ଷକବୃନ୍ଦ ପ୍ରାରମ୍ଭିକ ସଂଗୀତ ଗାନ କରିଥିଲେ । ସଙ୍କର୍ଷଣ ପଣ୍ଡା ସମସ୍ତଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ ।

ଗୋପବଂଧୁ ଜୟନ୍ତୀ ଉପଲକ୍ଷେ ଗତ ୧୬ । ୯ । ୯୦ ତାରିଖ ସକାଳ ୮ । ୩୦ ମିନିଟ୍‌ରେ ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୧୮ ଠାରେ ବକ୍ତୃତା, କବିତା, ପ୍ରବନ୍ଧ ପ୍ରତିଯୋଗିତା ହୋଇଥିଲା । ଏହି ପ୍ରତିଯୋଗିତାରେ ଅଧିକ ସଂଖ୍ୟାରେ ଛାତ୍ର, ଛାତ୍ରୀମାନେ ଯୋଗଦାନ କରିପାରି ନ ଥିଲେ । କାରଣ :- ହାଇସ୍କୁଲ ଓ କଲେଜ ସ୍ତରରେ ଛାତ୍ର, ଛାତ୍ରୀମାନେ ସରକାରଙ୍କର ମଣ୍ଡଳ କମିଶନର ଲାଗୁ ପାଇଁ ପ୍ରତିବାଦ କରୁଥିଲେ ଯେଉଁ କେତେକ ଛାତ୍ର, ଛାତ୍ରୀ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରୁ ବିଜୟୀ ପ୍ରତିଯୋଗୀଙ୍କ ନାମ ଓ ବିଚ୍ଚରକ ମଣ୍ଡଳୀର ନାମ ନିମ୍ନରେ ଦିଆଗଲା ।

ବିଚ୍ଚରକ ମଣ୍ଡଳୀ :— ୧) ଶ୍ରୀ ଦେବେନ୍ଦ୍ର ନାଥ ପତି,
ଶ୍ରୀ କୋର ବିଶୋୟୀ,
ଶ୍ରୀମତୀ ଶାନ୍ତଲତା ରଥ,
ଶ୍ରୀ ଡକ୍ଟର ଆର, ଏନ୍ ଦାସ,
ଶ୍ରୀ ସମରେନ୍ଦ୍ର ମୁଦାଲି,
ଶ୍ରୀ ହରେକୃଷ୍ଣ ଦାସ;
ଶ୍ରୀ ଅରବିନ୍ଦ ମିଶ୍ର,
ଶ୍ରୀ ମହେଶ୍ୱର ପଣ୍ଡା
ଶ୍ରୀ ନନୀ ଗୋପାଳ ବୋଷ

'କ' ବିଭାଗ ବିଜୟୀ ଛାତ୍ର, ଛାତ୍ରୀ :—

ପ୍ରବନ୍ଧ ପ୍ରତିଯୋଗିତା :—

ପ୍ରଥମ - କୁମାରୀ ଅର୍ପିତା ପଟ୍ଟନାୟକ, ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୧
୨ୟ - ହେମନ୍ତ କୁମାର ବେହେରା, ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୧୫
୩ୟ - ଶ୍ରୀ ଦେବୀ ପ୍ରସନ୍ନ ଆଚାର୍ଯ୍ୟ, ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୪
ସାନ୍ତ୍ୱନା ପୁରସ୍କାର - ଶ୍ରୀ ବିନୟ ବେହେରା, ଇସ୍ପାତ ଇଂଲିଶ ମିଡ଼ୟମ ସ୍କୁଲ, ସେକ୍ଟର-୨୦

## 'ଭ' ବିଭାଗ ( ନିମ୍ନ ମାଧ୍ୟମିକ )

ଆବୃତ୍ତି ପ୍ରତିଯୋଗିତା :—

ପ୍ରଥମ - କୁମାରୀ ଶୈଳବାଳା ପରିଡା, ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୭ ( ନୂଆ )
୨ୟ - କୁମାରୀ ନମିତା ସାବତ, ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୪
୩ୟ - କୁମାରୀ ଅନୀତା ସଂଖୁଆ, ଇସ୍ପାତ ଲୋୟର ସେକେଣ୍ଡାରୀ ସ୍କୁଲ, ସେକ୍ଟର-୧୫

## 'କ' ବିଭାଗ ( ନିମ୍ନ ମାଧ୍ୟମିକ )

ବକ୍ତୃତା ପ୍ରତିଯୋଗିତା :—

ପ୍ରଥମ - କୁମାରୀ ତୃପ୍ତି ଦତ୍ତ, ଇସ୍ପାତ ନିମ୍ନ ମାଧ୍ୟମିକ ବିଦ୍ୟାଳୟ, ସେକ୍ଟର-୧୯
୨ୟ - କୁମାରୀ ଅର୍ପିତା ବିଶୋୟୀ, ଦୀପିକା, ଇଂଲିଶ ମେଡ଼ୟମ ସ୍କୁଲ, ସେକ୍ଟର-୫
୩ୟ - ଶ୍ରୀ ଦୀପ୍ତି ରଂଜନ ବେହେରା, ନିମ୍ନ ମାଧ୍ୟମିକ ବିଦ୍ୟାଳୟ, ସେକ୍ଟର-୪

## 'ଖ' ବିଭାଗ ( ହାଇସ୍କୁଲ )

ପ୍ରବନ୍ଧ ପ୍ରତିଯୋଗିତା :—

ପ୍ରଥମ - ଶ୍ରୀ ସଂଜୟ ବେହେରା, ଇସ୍ପାତ ଇଂଲିଶ ସ୍କୁଲ, ସେକ୍ଟର-୨୦
୨ୟ - କୁମାରୀ ଅମୀତା ସାହୁ, ଇସ୍ପାତ ଶିକ୍ଷା ସଦନ, ସେକ୍ଟର-୩
୩ୟ - ଶ୍ରୀ ବିଭୁନ ପାର୍ଟି, ଡ଼ସୋଜା ସ୍କୁଲ, ସେକ୍ଟର-୨
ସ୍ୱତନ୍ତ୍ର ପୁରସ୍କାର - ଶ୍ରୀ ଦରିଦ୍ର ନାରାୟଣ ନାୟକ, ମହ୍ତାବ ହାଇ ସ୍କୁଲ, ଚମ୍ପୁଆ, କେଉଁଝର ।

**ବିଷୁବ ମିଳନ** :— ୧୨ । ୪ । ୯୧ ତାରିଖରେ ଆଦର୍ଶ ପାଠାଗାର ପ୍ରାଙ୍ଗଣରେ ମହା ବିଷୁବ ସଂକ୍ରାନ୍ତି ଓ କବି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ଭଂଜ କଳା କେନ୍ଦ୍ରର ଛାତ୍ର ଛାତ୍ରୀ ବୃନ୍ଦ ପ୍ରାରମ୍ଭିକ ସଂଗୀତ ଗାନ କଲାପରେ ଉତ୍ସବର କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ଏହି ଉତ୍ସବରେ ରାଉରକେଲା ଷ୍ଟିଲ ପ୍ଲାଣ୍ଟ ଉଅ ମେଟେରିଏଲର ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ନିର୍ମଳ ଚନ୍ଦ୍ର ମହାନ୍ତି ସଭାପତିତ୍ୱ କରିଥିଲେ । ରାଉରକେଲାର ବିଶିଷ୍ଟ କବି ଓ ସମାଲୋଚକ ଶ୍ରୀଯୁକ୍ତ ନବକିଶୋର ପଣ୍ଡା କବିତା ଗୁଡ଼ିକୁ ସମୀକ୍ଷା କରିଥିଲେ । ଉପସ୍ଥିତ କବିବୃନ୍ଦ ସେମାନଙ୍କର ସ୍ୱ ରଚିତ କବିତା ପାଠ କରିଥିଲେ । ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନର ଏକ ଅପୂର୍ବ ମିଳନ ହୋଇଥିଲା । ପାଠାଗାରର ସାଧାରଣ ସଂପାଦକ ଶ୍ରୀ ସଙ୍କର୍ଷଣ ପଣ୍ଡା ସ୍ୱାଗତ

ଅଭିଭାଷଣରେ କହିଥିଲେ ଯେ ଦେଶ, ଜାତି, ଧର୍ମ ଓ କର୍ମ ସର୍ବଦା କବିଙ୍କର ଅମର ଲେଖନୀ ଶକ୍ତିରେ ଚାଲିଛି । ସର୍ବଦା ଦେଶ, ସେମାନଙ୍କର କବିତାର ଉଦର, ଛନ୍ଦର; ସ୍ୱରର ତାଳେ ତାଳେ ଏକ ନୂତନ ଯୁଗର ବାର୍ତ୍ତା ଦେଉଛି ଏବଂ ଦେଉଥିବ । ନୂତନ ବର୍ଷ ସମସ୍ତଙ୍କ ପାଇଁ ମଙ୍ଗଳମୟ ହେଉ, ସୁଖମୟ ହେଉ କାମନା କରି ଉପସ୍ଥିତ ଦର୍ଶକ, ଲେଖକ, ଯୁବକ ଛାତ୍ର, ଛାତ୍ରୀ ଶିକ୍ଷକ ଓ କବି ମାନଙ୍କୁ ଧନ୍ୟବାଦ ଦେଇଥିଲେ ।

## ଉପସ୍ଥିତ କବି :—

| | |
|---|---|
| ୧ - ଶ୍ରୀ ନବ କିଶୋର ପଣ୍ଡା | ସୁଶୀଳା ନିବାସ, ଶକ୍ତି ନଗର, ରାଉରକେଲା |
| ୨ - ଶ୍ରୀ ଦିବାକର ଷଡଙ୍ଗୀ | ଇ/୪, ଶକ୍ତି ନଗର, ରାଉରକେଲା |
| ୩ - ଶ୍ରୀ ମଧୁର କମଲ୍ | ଏ/୨୦୬, ସେକ୍ଟର-୭, ରାଉରକେଲା |
| ୪ - ଶ୍ରୀ କୈଳାସ ଚନ୍ଦ୍ର ନାଥ | ବି. ଏଲ. ୧୪୭, ବାସନ୍ତୀ କଲୋନୀ, ରାଉରକେଲା |
| ୫ - ଶ୍ରୀ ବେଣୁଧର ନାୟକ | ଭି/୧୭୭, ସେକ୍ଟର-୧, ରାଉରକେଲା |
| ୬ - ଶ୍ରୀ ମହେଶ୍ୱର ପଣ୍ଡା | ଏ/୧୪୩, ସେକ୍ଟର-୪, ରାଉରକେଲା |
| ୭ - ଶ୍ରୀ ଶ୍ରୀଚରଣ ମହାନ୍ତ | ସି/୧୫୧, ସେକ୍ଟର-୧୬, ରାଉରକେଲା |
| ୮ - ଶ୍ରୀ ଦେବେନ୍ଦ୍ର କୁମାର.ଦାଶ | ୩୮-ଏ, ଶକ୍ତିନଗର, ରାଉରକେଲା |
| ୯ - ଶ୍ରୀ କବିବର ପରିଡା | ଡି/୫୭; ଆର. ଇ. କଲେଜ କ୍ୟାମ୍ପସ୍ |
| ୧୦ - ଶ୍ରୀ ରବିନ୍ଦ୍ରନାଥ ବେହୁରିଆ | ସି. କଲୋନୀ, ବି/୩୪୨, ରାଉରକେଲା |
| ୧୧ - ଶ୍ରୀ ଭଗବାନ ଚନ୍ଦ୍ର ରାଉତ | ସି/୧୦୧, ସେକ୍ଟର-୧୪, ରାଉରକେଲା |
| ୧୨ - ଶ୍ରୀ ଚନ୍ଦ୍ରମଣି ମଲ୍ଲିକ | ଡ/୫୫୮, ସେକ୍ଟର-୮, ରାଉରକେଲା-୯ |
| ୧୩ - ଶ୍ରୀ ତ୍ରିଲୋଚନ ମହାନ୍ତ | ଏଚ/୪୦୭, ସେକ୍ଟର-୧, ରାଉରକେଲା |
| ୧୪ - ଶ୍ରୀ ନିତ୍ୟାନନ୍ଦ ନାୟକ | ଏ/୧୦୧, ସେକ୍ଟର-୬, ରାଉରକେଲା |
| ୧୫ - ଶ୍ରୀ ଅନୀଲ କୁମାର ଦାଶ | ଡ/୮୨୨, ସେକ୍ଟର-୨୦, ରାଉରକେଲା |
| ୧୬ - ଶ୍ରୀ ପରେଶ ବିଶ୍ୱାଳ | ବି/୧୦୦, ସେକ୍ଟର-୪, ରାଉରକେଲା |
| ୧୭ - ଶ୍ରୀମତୀ ଜ୍ୟୋତ୍ସ୍ନା ସ୍ୱାଇଁ | ଏ/୧୧୭, ସେକ୍ଟର-୧୯, ରାଉରକେଲା |
| ୧୮ - ଶ୍ରୀମତୀ ଶକୁନ୍ତଳା ଦାଶ | ଡ/୮୨୨, ସେକ୍ଟର-୨୦, ରାଉରକେଲା |
| ୧୯ - ଶ୍ରୀ ରଜୀବ ପାଣି | ମନ୍ଦାକିନୀ ପ୍ରେସ୍, ମେନରୋଡ, ରାଉରକେଲା |
| ୨୦ - ଶ୍ରୀ ଦୀନବନ୍ଧୁ ପଣ୍ଡା | ଡ/୩୫୫, ସେକ୍ଟର-୧୬, ରାଉରକେଲା |
| ୨୧ - ଶ୍ରୀ ଏସ୍. ଏନ୍. ଦାଶ | ଏଚ୍/୨୮୮, ସେକ୍ଟର-୬, ରାଉରକେଲା |
| ୨୨ - ଶ୍ରୀ ବିକ୍ରମ ପାଢୀ | ଭି/୪୨୮, ସେକ୍ଟର-୬, ରାଉରକେଲା |
| ୨୩ - ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ର | ବି. କଲୋନୀ, ରାଉରକେଲା-୧୦ |
| ୨୪ - ଶ୍ରୀ ପ୍ରକାଶ ଚନ୍ଦ୍ର ଦାଶ | ୩୮, ଶକ୍ତିନଗର, ରାଉରକେଲା-୧୪ |
| ୨୫ - ଶ୍ରୀମତୀ ସୌଦାମିନୀ ପଣ୍ଡା | ଶକ୍ତିନଗର ପୋଷ୍ଟ ଅଫିସ, ରାଉରକେଲା |

| | |
|---|---|
| ୨୬ - ଶ୍ରୀ ବଳରାମ ଦାଶ | ଜି/୨୭୬, ସେକ୍ଟର-୧୯, ରାଉରକେଲା |
| ୨୭ - ଶ୍ରୀ ରାଧାନାଥ ରାଉତ | ଡି/୪୩, ସେକ୍ଟର-୭, ରାଉରକେଲା |
| ୨୮ - ଶ୍ରୀ କୃପାସିନ୍ଧୁ କର | ସି/୬୯, ସେକ୍ଟର-୧, ରାଉରକେଲା |
| ୨୯ - ଶ୍ରୀମତୀ ପୁଷ୍ପଲତା ତ୍ରିପାଠୀ | ଏ/୧୭୦, ସେକ୍ଟର-୨, ରାଉରକେଲା |
| ୩୦ - ଶ୍ରୀ ରାଧୁ ମିଶ୍ର | ବି/୩୮, ସେକ୍ଟର-୧୩, ରାଉରକେଲା |
| ୩୧ - ଶ୍ରୀ ଗୋରାଚାନ୍ଦ ପଟ୍ଟନାୟକ | ସି/୫୬୩, କୋଏଲ ନଗର, ରାଉରକେଲା |
| ୩୨ - ଶ୍ରୀ ଏମ୍. ଏସ. ଶାସ୍ତ୍ରୀ | ବି/୧୨୫, ସେକ୍ଟର-୨୧, ରାଉରକେଲା-୧୦ |
| ୩୩ - ଶ୍ରୀମତୀ କାମେଶ୍ୱରୀ ଦେବୀ | ବି/୧୨୫, ସେକ୍ଟର-୨୧, ରାଉରକେଲା-୧୦ |
| ୩୪ - ଶ୍ରୀ ରଘୁବୀର ଧଳ | ଏ/୧୩୮, ସେକ୍ଟର-୧୯, ରାଉରକେଲା |
| ୩୫ - ଶ୍ରୀ ଅନୁପ ମହାପାତ୍ର | ସି/୨୫, ସେକ୍ଟର-୬, ରାଉରକେଲା |
| ୩୬ - ଶ୍ରୀ ବି. ସି. ନାୟକ | ଜି/୪୯୨, ସେକ୍ଟର-୬, ରାଉରକେଲା |
| ୩୭ - ଶ୍ରୀ ଜି. ଏଚ୍. ଦେଶମୁଖ | ଏ/୨୭, ସେକ୍ଟର-୧୮, ରାଉରକେଲା |

**ଭଂଜ ଭବନ** :— ଭଂଜ ଭବନର ନିର୍ମାଣ ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ ଶେଷ ହେଲାପରେ ଦ୍ୱିତୀୟ ପର୍ଯ୍ୟାୟର ନିର୍ମାଣ କାର୍ଯ୍ୟ ହାତକୁ ନେବାରେ ପ୍ରାୟ ଏକ ବର୍ଷ ଡେରି ହୋଇଗଲା । ପ୍ଲାନ, ଡ଼ିଜାଇନ୍, ଡ୍ରଇଁ ଇତ୍ୟାଦି ଯୋଗାଡ କରିବାରେ ନାନା ପ୍ରକାର ବାଧାବିଘ୍ନ ସୃଷ୍ଟି ହୋଇଥିଲା । ଯାହାହେଉ ଡକ୍ଟର ଅମୂଲ୍ୟ କୁମାର ପଣ୍ଡା ଓ ଶ୍ରୀ ପର୍ଶୁରାମ ଦାଶଙ୍କ ଚେଷ୍ଟାରେ ଉପରୋକ୍ତ ବାଧାବିଘ୍ନ ଦୂର କରାଯାଇ ପାରିଛି । ଖୁବ୍ ଶୀଘ୍ର ଭଂଜ ଭବନର ଦ୍ୱିତୀୟ ପର୍ଯ୍ୟାୟର ନିର୍ମାଣ କାର୍ଯ୍ୟ ଆରମ୍ଭ ହେବ । ଏଥିପାଇଁ ରାଉରକେଲା ବାସୀ ସାହାଯ୍ୟ ସହଯୋଗ ନ କଲେ ନିର୍ମାଣ ପଥରେ ଆଗେଇବା ସମ୍ଭବପର ହେବନାହିଁ । ଆମ ପାଖରେ ଭଂଜ ଭବନ ସେଭିଙ୍ଗ୍ ଏକାଉଣ୍ଟରେ ସାତ ଲକ୍ଷ କୋଡ଼ିଏ ହଜାର ଟଙ୍କା ଜମାଅଛି । ଯେଉଁ ପ୍ରେକ୍ଷାଳୟ ନିର୍ମାଣ କାର୍ଯ୍ୟ ହାତକୁ ନିଆଯାଉଛି ତାହା ଦଶ ଲକ୍ଷ ଟଙ୍କାରୁ ଅଧିକ ଖର୍ଚ୍ଚ ହେବ । ତେଣୁ ଏ ଅଭାବ ପୂରଣ ପାଇଁ ସମସ୍ତଙ୍କର ସାହାଯ୍ୟ ଭିକ୍ଷା କରାଯାଉଛି । ଜୟହିନ୍ଦ୍ ।

**ସଙ୍କର୍ଷଣ ପଣ୍ଡା**
ସାଧାରଣ ସଂପାଦକ
ଆଦର୍ଶପାଠାଗାର, ଭଂଜଭବନ
ଓ
ସଭ୍ୟ ଭଂଜ କଲଚରାଲ ଟ୍ରଷ୍ଟ, ରାଉରକେଲା

# –ସୂଚୀପତ୍ର –


| ସୃଷ୍ଟି | ପୃଷ୍ଠା | ସ୍ରଷ୍ଟା |
|---|---|---|
| ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ କାବ୍ୟ "କୁଞ୍ଜବିହାର" | – ୧ – | ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର |
| ପାଠାଲୋଚନା ପ୍ରକ୍ରିୟା ଓ ଲାବଣ୍ୟବତୀ | – ୬ – | ପ୍ରଫେସର ଡ଼ଃ କୃଷ୍ଣଚରଣ ସାହୁ |
| ଉପେନ୍ଦ୍ରଙ୍କ ଦୃଷ୍ଟିରେ କାବ୍ୟ | – ୧୩ – | ଡ଼ଃ ଲକ୍ଷ୍ମୀଧର ଦାସ |
| ଭଞ୍ଜଙ୍କ କାବ୍ୟରେ ସ୍ତନ ବର୍ଣ୍ଣନାର ବୈଶିଷ୍ଟ୍ୟ | – ୨୦ – | ଡ଼ଃ କିଶୋର ଚନ୍ଦ୍ର ମିଶ୍ର |
| ଲାବଣ୍ୟବତୀ | – ୨୮ – | କବି ପରିଡ଼ା |
| 'ଲାବଣ୍ୟବତୀର ଭାଷା' | – ୩୧ – | ଦାଶରଥି ଦାସ |
| ଭଞ୍ଜ ରଚନାବଳୀର ବିଭାଗୀକରଣ | – ୩୭ – | ସୁମିତ୍ରା ମିଶ୍ର |
| ଭଞ୍ଜ ଭାରତୀରେ ଶ୍ରୀଜଗନ୍ନାଥ | – ୪୨ – | ନନ୍ଦତା ମିଶ୍ର |
| ଉପେନ୍ଦ୍ର ଭଞ୍ଜଙ୍କ 'କାମିନୀ ଚଉତିଶା' | – ୪୭ – | ଶ୍ରୀମତୀ ଜୟନ୍ତୀ ମିଶ୍ର |
| "ଭଞ୍ଜୀୟ କାବ୍ୟାନୁଭବରେ ନାରୀ" | – ୫୪ – | ହରପ୍ରିୟା ପଣ୍ଡା |
| Bhanjan Women : A Life Sketch | - 1 - | Kanhu Charan Padhy |
| The Chronological Account of the Bhanjas of Gumsur | - 10 - | Dr. Satyanarayan Rajguru |




ଆଦର୍ଶ ପାଠାଗାର ଦୀର୍ଘଦିନ ଧରି ଭଂଜ ଜୟନ୍ତୀ ସଉରକେଲା ରେ ପାଳନ କରିଆସି ଓଡ଼ିଶାର ସାଂସ୍କୃତିକ କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି କରି ଆସୁଛି । ଭଂଜଙ୍କର କବିତା ଲହରୀରେ ଲୋକେ ବିମୋହିତ ହେଉଥିଲେ । ପାଠାଗାରର କର୍ମକର୍ତ୍ତା ବୃନ୍ଦଙ୍କ ମନରେ ଅପୂର୍ବ ଜାଗରଣ ସୃଷ୍ଟି ହେଉଥିଲା, ହେଲେ ଆଜି କାହାରି ମନରେ ଭଂଜ ସାହିତ୍ୟ, କବିତା ପୁଲକ ଆଣି ପାରୁନି । ଲେଖକ, ବକ୍ତା, ଛାତ୍ର, ଶିକ୍ଷକ, ସାହିତି୍ୟକ, ସମାଲୋଚକ, ଦର୍ଶକ, କର୍ମକର୍ତ୍ତାମାନେ ନିଜେ ଗାଉଛନ୍ତି, ନିଜେ ଶୁଣୁଛନ୍ତି । ସମୟ ଯଦି ଭଂଜ ସାହିତ୍ୟକୁ ଏହିପରି ଗତି କରଏ ଏବଂ ଆମେ ଯଦି ନୀରବ ଦର୍ଶକ ହୋଇ ଛିଡା ହୁଅନ୍ତି ତେବେ ଆମେ ଆମର ପରିଚୟ କ'ଣ ବୋଲି ଦେବା ? ଆମର ସ୍ଥିତି କେଉଁଠି ରହିବ ? ଆଜି ପରା ଦିନରେ ସମସ୍ତ ଉତ୍କଳବାସୀ ଆଜିର ପରିସ୍ଥିତିକୁ ମର୍ମେ ମର୍ମେ ଅନୁଭବ କରି ଭଂଜ ସାହିତ୍ୟରେ ନୂତନ ଜାଗରଣ ସୃଷ୍ଟି କରି ଉତ୍କଳ ମାତାର ସାରସ୍ୱତ ଭଣ୍ଡାରକୁ ପୂରଣ କରିବାକୁ ଶପଥ ନେବାକୁ ହେବ ।

**ସଙ୍କର୍ଷଣ ପଣ୍ଡା**
ସଂପାଦକ

# କୃତଜ୍ଞତା ଜ୍ଞାପନ

ଭଂଜ ସ୍ମରଣିକାର ଦ୍ୱାତ୍ରିଂଶ ସଂଖ୍ୟା ପ୍ରକାଶନ ପାଇଁ ବ୍ରହ୍ମପୁର ବିଶ୍ୱ-ବିଦ୍ୟାଳୟର ଅଧ୍ୟାପକ ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର ବହୁତ ପରିଶ୍ରମ କରି ବିଭିନ୍ନ ଲେଖକଙ୍କୁ ଅନୁରୋଧ କରି କେତେ ଗୁଡ଼ିଏ ମୂଲ୍ୟବାନ୍ ପ୍ରବନ୍ଧ ଯୋଗାଇ ଦେଇଥିବାରୁ ଆଜି ଏ ସ୍ମରଣିକା ପ୍ରକାଶ ପାଇବା ସମ୍ଭବ ହୋଇପାରିଛି । ତାଙ୍କର ସାହାଯ୍ୟ ସହଯୋଗ ପାଇଥିବାରୁ ସର୍ବ ପ୍ରଥମେ ତାଙ୍କୁ ଅନୁଷ୍ଠାନ ପକ୍ଷରୁ କୃତଜ୍ଞତା ଜ୍ଞାପନ କରୁଛି ।

ଯେଉଁମାନେ ବିଜ୍ଞାପନ, ସାହାଯ୍ୟ, ସହାନୁଭୂତି ଓ ସମୟୋପ-ଯୋଗୀ ପରାମର୍ଶ ଦେଇ ଏହାକୁ ଲୋକ ଗୋଚରକୁ ଆଣି ପାରିଛନ୍ତି ତଥା ଯେଉଁ ବକ୍ତା, ଅତିଥିମାନେ ଓ କଳାକାରମାନେ ଜୟନ୍ତୀ ଉତ୍ସବରେ ଯୋଗଦାନ ଦେଇ ସଭାର ଶୋଭବର୍ଦ୍ଧନ କରିଛନ୍ତି ସେମାନଙ୍କ ନିକଟରେ ଆମେ ଆମ ଅନୁଷ୍ଠାନ ପକ୍ଷରୁ କୃତଜ୍ଞତା ଜ୍ଞାପନ କରୁଛୁ ।

ରାଉରକେଲା ଇସ୍ପାତ କାରଖାନାର କର୍ତ୍ତୃପକ୍ଷ ଆମକୁ ବହୁ ଦୃଷ୍ଟିରୁ ଭଂଜ ଜୟନ୍ତୀ ଉତ୍ସବରେ ସାହାଯ୍ୟ କରୁଥିବାରୁ ଭଂଜ ଜୟନ୍ତୀ ଉତ୍ସବକୁ ସହଜରେ ପାଳନ କରାଯାଇ ପାରୁଛି । ଆମେ ଅନୁଷ୍ଠାନ ପକ୍ଷରୁ କୃତଜ୍ଞତା ଜ୍ଞାପନ କରୁଛୁ ।

**ସଙ୍କର୍ଷଣ ପଣ୍ଡା**
ଆଦର୍ଶ ପାଠାଗାର
ଭଂଜ କଲ୍‌ଚରାଲ ଟ୍ରଷ୍ଟ

# ● ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ କାବ୍ୟ " କୁଞ୍ଜ ବିହାର "

* ଡକ୍ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର
ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ବ୍ରହ୍ମପୁର-୭୬୦୦୦୭, ଗଞ୍ଜାମ



କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ ବହୁଗ୍ରନ୍ଥର ରଚୟିତା ରୂପେ ଭଞ୍ଜ ସାହିତ୍ୟପ୍ରେମୀ ତଥା ଗବେଷକ ମାନେ ମତବ୍ୟକ୍ତ କରିଛନ୍ତି । ବହୁଗ୍ରନ୍ଥ ମଧ୍ୟରୁ ମାତ୍ର ୩୧ ଟି ମୁଦ୍ରିତ ରୂପ ଗ୍ରହଣ କରିଥିବା ବେଳେ ଅନ୍ୟ ସମସ୍ତ ଗ୍ରନ୍ଥ ଅପ୍ରକାଶିତ ଭବରେ ରହିଛି । ଏହି ଅପ୍ରକାଶିତ ଗ୍ରନ୍ଥ ମଧ୍ୟରୁ କେତେକ ଆଦୌ ମିଳୁ ନ ଥିବା ବେଳେ ମାତ୍ର ଅଳ୍ପ କେତୋଟି ତାଳପତ୍ର ପୋଥି ଆକାରରେ ରହିଛି । ଯେଉଁ କେତେକ ଗ୍ରନ୍ଥ ଆଦୌ ଦେଖିବାକୁ ମିଳୁନାହିଁ, ସେଗୁଡ଼କର ଅସ୍ତିତ୍ୱ ସମ୍ପର୍କରେ ସନ୍ଦେହ ଜାତ ହେବା ମଧ୍ୟ ସ୍ୱାଭବିକ । ଅପ୍ରକାଶିତ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାର ରଚିତ " କୁଞ୍ଜ ବିହାର " ଗ୍ରନ୍ଥଟି ଅନ୍ୟତମ । ତାହା ଏବେ ମିଳିଛି ।

ଉପେନ୍ଦ୍ର ଭଞ୍ଜଙ୍କ ସ୍ୱରଚିତ " ଚିତ୍ରକାବ୍ୟ ବନ୍ଧୋଦୟ " ରେ ଏହି କାବ୍ୟ ସଂପର୍କରେ ସର୍ବ ପ୍ରଥମ ସୂଚନା ମିଳେ । ଉକ୍ତ ଗ୍ରନ୍ଥରେ ଉଲ୍ଲେଖ ଅଛି :-

" ରସିକ ହାରାବଳୀ ନାମେ ଗୀତ
କୁଞ୍ଜ ବିହାର ଯେ ଶ୍ୟାମଚରିତ । " (୧୯ ପଦ)

ଏଥିରୁ ସ୍ପଷ୍ଟ ରୂପେ ଜଣାଯାଏ ଯେ ଉପେନ୍ଦ୍ର ଭଞ୍ଜ ଚିତ୍ରକାବ୍ୟବନ୍ଧୋଦୟ ରଚନା କରିବା ପୂର୍ବରୁ "କୁଞ୍ଜ ବିହାର" କାବ୍ୟଟିକୁ ରଚନା କରି ସାରିଥିଲେ । ଏହା ଏକ ଶ୍ୟାମ ଚରିତ ବା କୃଷ୍ଣଚରିତ ମୂଳକ କାବ୍ୟ ।

ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ଗୁଡ଼ିକର ନାମ ତାଲିକା ଦେବା ଅବସରରେ ମନମୋହନ ଚକ୍ରବର୍ତ୍ତୀ ( ୧୮୯୮ ), ମଧୁସୂଦନ ଦାଶ ( ୧୯୦୩ ), ତାରିଣୀ ଚରଣ ରଥ (୧୯୧୬ ), ବିଜୟ ଚନ୍ଦ୍ର ମଜୁମଦାର ( ୧୯୨୩ ), ପଣ୍ଡିତ ବିନାୟକ ମିଶ୍ର (୧୯୨୮), ପ୍ରମୁଖ ଉକ୍ତ କୁଞ୍ଜ ବିହାର କାବ୍ୟର ନାମୋଲ୍ଲେଖ କରିଛନ୍ତି । କିନ୍ତୁ ଜଗବନ୍ଧୁ ସିଂହ ସ୍ୱରଚିତ " ପ୍ରାଚୀନ ଉତ୍କଳ " ଗ୍ରନ୍ଥ ( ୧୯୨୯ ) ରେ ଏ ଗ୍ରନ୍ଥଟିକୁ ବାଦ୍‌ଦେଇ କୃଷ୍ଣ ବିହାର ନାମକ ଏକ ନୂତନ ଗ୍ରନ୍ଥର ସଂଯୋଗ କରିଥିବାରୁ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଏହାକୁ ମୁଦ୍ରଣ ପ୍ରମାଦଗତ କାରଣ ବୋଲି ଦର୍ଶାଇଛନ୍ତି । ଏହା ମୁଦ୍ରଣଗତ ପ୍ରମାଦ ଅପେକ୍ଷା ଅଜ୍ଞତା ବା ପୋଥି-ପଠନଗତ ପ୍ରମାଦ ପରି ମନେହୁଏ । କାରଣ ଜଗବନ୍ଧୁ ସିଂହ ମୁକୁର ( ୧୪/୨ ) ପତ୍ରିକାରେ "ପ୍ରାଚୀନ ଉତ୍କଳ" ଶୀର୍ଷକ ଲେଖା ମଧ୍ୟରେ ପ୍ରଥମେ ହଣ୍ଟର ସାହେବଙ୍କ ତାଲିକାକୁ ଉଦ୍ଧାର କରିବା ସମୟରେ " କୁଞ୍ଜବେହାର " ଉଲ୍ଲେଖ କରିଛନ୍ତି । ପୁନଶ୍ଚ ସେହି ମୁକୁରର ( ୧୪/୯,୧୦ ) ସଂଖ୍ୟାରେ ସେ ନିଜେ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ତାଲିକା ଦେବାବେଳେ " କୃଷ୍ଣବିହାର " ନାମଟି ପ୍ରଦାନ କରିଛନ୍ତି । ଏହା ଯଦି ମୁଦ୍ରଣଗତ ପ୍ରମାଦ ହୋଇଥାନ୍ତା ତେବେ ୧୯୨୯ ମସିହାରେ ପ୍ରାଚୀନ ଉତ୍କଳ ଗ୍ରନ୍ଥର ପ୍ରଥମ ସଂସ୍କରଣ ସମୟରେ ସଂଶୋଧନ ହୋଇ ପାରିଥାନ୍ତା । ଏଥିରୁ ଅନୁମିତ ହୁଏ ଜଗବନ୍ଧୁ ସିଂହ କୌଣସି ଚିତ୍ରକାବ୍ୟ ବନ୍ଧୋଦୟ ପୋଥିରୁ

ଉଦ୍ଧୃତି ଦେଖି କିମ୍ବା କୁଞ୍ଜବିହାର ପୋଥିରୁ " କୁଞ୍ଜ " କୁ " କୃଷ୍ଣ " ବୋଲି ପଢିବା ସଙ୍ଗେ ସଙ୍ଗେ ଏଭଳି ଏକ ପ୍ରମାଦକୁ ଗ୍ରହଣ କରିଥିବା ସମ୍ଭବପର ।

ଏହାପରେ ଚିନ୍ତାମଣି ମହାନ୍ତି ସ୍ୱରଚିତ ଗ୍ରନ୍ଥର କାବ୍ୟ ( ୧୯୩୬ ) ରେ କୃଷ୍ଣବିହାର କାବ୍ୟର ନାମୋଲ୍ଲେଖ କରିବା ସମୟରେ ଭଗୀରଥି ମହାପାତ୍ର (୧୯୩୮) ଓ ଶ୍ରୀଧର ଦାସ (୧୯୩୮) କୁଞ୍ଜବିହାରକୁ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ରୂପେ ଗ୍ରହଣ କରିଛନ୍ତି । କିନ୍ତୁ ହରେକୃଷ୍ଣ ମହତାବ ୧୯୪୮ ମସିହାରେ ରସଲ-କୋଣ୍ଡା ( ଭଞ୍ଜନଗର ) ଭଞ୍ଜ ସାହିତ୍ୟ ପରିଷଦ ଦ୍ୱାରା ସଂଗୃହୀତ ହୋଇଥିବା ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ଏକ ତାଲିକା ଦେବା ଅବସରରେ କୁଞ୍ଜବିହାର ଓ ଶ୍ରୀକୃଷ୍ଣବିହାର ନାମକ ଦୁଇଟି ଗ୍ରନ୍ଥକୁ ଗ୍ରହଣ କରିଛନ୍ତି । ପରବର୍ତ୍ତୀ ସମୟରେ ବିଚ୍ଛନ୍ଦଚରଣ ପଟ୍ଟନାୟକ ( ୧୯୫୦ ), ଅନନ୍ତପଦ୍ମନାଭ ପଟ୍ଟନାୟକ ( ୧୯୫୯ ) ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ( ୧୯୬୫ ), ଜୟକୃଷ୍ଣ ମିଶ୍ର ( ୧୯୭୭ ) ଆଦି ମହତାବଙ୍କ ଦ୍ୱାରା ପ୍ରଦତ୍ତ ଏହି ଦୁଇଟି ନାମକୁ ଉପେନ୍ଦ୍ର ଭଞ୍ଜଙ୍କର ଦୁଇଟି ରଚନା ରୂପେ ମୁକ୍ତଭାବରେ ସ୍ୱୀକାର କରିଛନ୍ତି । ଏମାନେ ଗ୍ରନ୍ଥ ସଂପର୍କରେ ବିଶେଷ କିଛି ସୂଚନା ଦେଇ ନ ଥିଲେ ମଧ୍ୟ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ସ୍ୱରଚିତ ଭଞ୍ଜଭୂମିକା ଗ୍ରନ୍ଥ ( ୧୯୭୫ ) ରେ କୁଞ୍ଜବିହାରକୁ " ଶ୍ରୀକୃଷ୍ଣ ଚରିତ ଏଥିରେ ପରିବେଷିତ " କହିବା ବେଳେ ଶ୍ରୀକୃଷ୍ଣବିହାର ସଂପର୍କରେ କହିଛନ୍ତି ' ଅନୁମିତ ହୁଏ, କୃଷ୍ଣଙ୍କ ଚରିତ ଏଥିରେ ବର୍ଣ୍ଣିତ । କିନ୍ତୁ ଭଞ୍ଜଙ୍କର କି ନୁହେଁ ଦେଖିବାକୁ ହେବ " । ଅଧ୍ୟାପକ ବ୍ରହ୍ମାଙ୍କର ଏହି ମତରୁ ଅନୁମିତ ହୁଏ ଯେ ଗ୍ରନ୍ଥଦ୍ୱୟର ଅନୁପଲବ୍ଧିରୁ ସେ ଏଭଳି ମତ ଦେଇଛନ୍ତି । ପରବର୍ତ୍ତୀ ସମୟରେ କେତେକ ଆଲୋଚକ ଉକ୍ତ ଗ୍ରନ୍ଥଦ୍ୱୟରୁ ଗୋଟିକୁ ( କୁଞ୍ଜ ବିହାରକୁ ) ନେବା ବେଳେ କେତେକ ଦୁଇଟିକୁ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ ରୂପେ ତାଲିକାଭୁକ୍ତ କରିଛନ୍ତି ।

ଏହାର କାରଣ ରୂପେ ଗ୍ରନ୍ଥର ଅନୁପଲବ୍ଧତାକୁ ଯେତିକି ପରିମାଣରେ ଦାୟୀ କରାଯାଇ ନ ପାରେ ତା'ଠାରୁ ବେଶୀ ଆଲୋଚକ ମାନଙ୍କର ଦୃଷ୍ଟିଭଂଗୀକୁ ଦାୟୀ କରାଯାଇପାରେ । କବି ସମ୍ରାଟ ଉପେନ୍ଦ୍ର-ଭଞ୍ଜଙ୍କ ଦ୍ୱାରା ସ୍ୱୀକୃତ " କୁଞ୍ଜବିହାର " ଜଗବନ୍ଧୁ ସିଂହଙ୍କ ମୁଦ୍ରଣଗତ ବା ପଠନଗତ ପ୍ରମାଦହେତୁ " କୃଷ୍ଣବିହାର " ହୋଇ ଚିନ୍ତାମଣି ମହାନ୍ତିଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଗ୍ରନ୍ଥରୂପେ ତାଲିକାଭୁକ୍ତ ହେଲା । ତା'ପରେ ଡକ୍ଟର ମହତାବଙ୍କ ଦ୍ୱାରା ରସଲକୋଣ୍ଡା ଭଞ୍ଜ ସାହିତ୍ୟ ପରିଷଦର ସଂଗୃହୀତ ତାଲିକାଭୁକ୍ତ ହୋଇ ଦୁଇଟି ଗ୍ରନ୍ଥରେ ପରିଣତ ହେଲା । ଏଭଳି ଦୁଇଟି ଗ୍ରନ୍ଥକୁ ଭଞ୍ଜ ସାହିତ୍ୟାନୁରାଗୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବିନା ଦ୍ୱିଧାରେ ନିଜ ତାଲିକାରେ ପ୍ରଦାନ କରିବା ବେଳେ ଭଞ୍ଜ ସାହିତ୍ୟ ପରିଷଦ ଦ୍ୱାରା ଶ୍ରୀକୃଷ୍ଣବିହାର ସଂଗୃହୀତ ହୋଇଥିବାର ଘୋଷଣା ପରବର୍ତ୍ତୀ ଆଲୋଚକମାନଙ୍କୁ ଦ୍ୱନ୍ଦରେ ପକାଇଲା । ଯାହା ଫଳରେ ୧୯୫୦ ମସିହାର ପରବର୍ତ୍ତୀ ଆଲୋଚକମାନଙ୍କ ମଧ୍ୟରୁ କେତେକ ଏହି ଦୁଇଟି ଗ୍ରନ୍ଥରୁ ଗୋଟିକୁ ନେବା ବେଳେ କେତେକ ଉଭୟକୁ ଉପେନ୍ଦ୍ରଙ୍କ ରଚନାବଳୀ ରୂପେ ସ୍ୱୀକୃତି ପ୍ରଦାନ କଲେ । ଏହାଦ୍ୱାରା ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ସଂଖ୍ୟା ବୃଦ୍ଧି ଘଟିଲେ ମଧ୍ୟ କେତେକ ଗ୍ରନ୍ଥର ଅସ୍ତିତ୍ୱ କ୍ରମଶଃ ସନ୍ଦେହ ଯୁକ୍ତ ହେଲା । ଏହିଭଳି ଏକ ସନ୍ଦେହପୂର୍ଣ୍ଣ ଗ୍ରନ୍ଥ ହେଉଛି " କୁଞ୍ଜ ବିହାର " ।

" କୁଞ୍ଜବିହାର " କାବ୍ୟଟି କବିସମ୍ରାଟ ଉପେନ୍ଦ୍ର-ଭଞ୍ଜଙ୍କ ଦ୍ୱାରା ରଚିତ ଏକ କ୍ଷୁଦ୍ର ଅବୟବ ବିଶିଷ୍ଟ ଶ୍ରୀକୃଷ୍ଣଚରିତ ମୂଳକ କାବ୍ୟ । ଏହା ୭ ଛାନ୍ଦ ଯୁକ୍ତ । କାବ୍ୟଟିର ୧ମ, ୪ର୍ଥ, ୫ମ ଓ ଷଷ୍ଠ ଛାନ୍ଦର ଭଣିତାରେ " ଉପଇନ୍ଦ୍ର ଭଞ୍ଜ ମଙ୍ଗରାଜ " ଉଲ୍ଲେଖ ଥିବାବେଳେ ୨ୟ ଛାନ୍ଦରେ " ଉପଇନ୍ଦ୍ର ମଙ୍ଗରାଜ " ୩ୟ ଛାନ୍ଦରେ " ଭଞ୍ଜ ଉପଇନ୍ଦ୍ର ", ଓ ୭ମ ଛାନ୍ଦରେ

" ଉପଇନ୍ଦ୍ର ଭଞ୍ଜ " ବୋଲି ଉଲ୍ଲେଖ ଥିବାରୁ ଏହା ଉପେନ୍ଦ୍ର ଭଞ୍ଜଙ୍କ ଦ୍ୱାରା ରଚିତ ।

ଏହି କାବ୍ୟର ପ୍ରଥମରୁ ସପ୍ତମ ଛାନ୍ଦ ଯଥାକ୍ରମେ ୨୩, ୨୭, ୪୦, ୨୭, ୨୮, ୨୩ ଓ ୧୩ ପଦ ବିଶିଷ୍ଟ । ଛାନ୍ଦ ଗୁଡ଼କ ଯଥାକ୍ରମେ କଉଶିକ, ଆଷାଢ଼ଶୁକ୍ଳ ରାଗ-ବରାଡ଼, ମାଳବ, ପଞ୍ଚମବରାଡ଼, ଗୁର୍ଜ୍ଜରୀ, ଆହାରୀ, ରାମକାଳି ରାଗରେ ରଚିତ ।

କାବ୍ୟଟିର ଆରମ୍ଭରେ ପ୍ରାଚୀନ ପରମ୍ପରାନୁସାରେ ତଥା ମଧ୍ୟଯୁଗୀୟ କାବ୍ୟାଦର୍ଶାନୁଯାୟୀ କବି ଆଶୀର୍ନମସ୍କ୍ରିୟା କରି ଉଲ୍ଲେଖ କରିଛନ୍ତି :—

" ଜୟ ଜୟ ଜଗନ୍ନାଥ ହେ ଅନାଥ ନାଥ
ନୀଳଗିରି ସୁନ୍ଦର ।
ତନୁ ଘନସାର ହୋଇ ଘନସାର
ଦରନାଶନ ଦରଧର ।
ମହାପ୍ରଭୁ ହେ । ପଦ୍ମାପଦ୍ମମୁଖ ଭ୍ରମର ।
ହର ମନୋହର ହର ଘର × ×
ସର × × × ଦର୍ପହର । " ( ୧/୧ )

ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ କରିସାରିବା ପରେ କବି ବିଷୟ ବସ୍ତୁର ସୂଚନା ପ୍ରଦାନ କରି ବସନ୍ତ ବର୍ଣ୍ଣନା, ଛକୋକ୍ତି ମଧ୍ୟରେ ବୃକ୍ଷଲତାର ବର୍ଣ୍ଣନା, ରାଧା ଓ ସଖୀମାନେ ହାସ ପରିହାସ ହୋଇ ଯମୁନା ତୀରରେ ପହଞ୍ଚିବା କଥା ନିଖୁଣ ଭାବରେ ଚିତ୍ରଣ କରିଛନ୍ତି ।

ଦ୍ୱିତୀୟ ଛାନ୍ଦରେ କବି ମନୋମୁଗ୍ଧକର ଯମୁନାକୁ ଏକ ଦିବ୍ୟନାରୀ ରୂପେ କଳ୍ପନାକରି ଦର୍ଶାଇଛନ୍ତି :—

" ଏଥୁ ଅନନ୍ତରେ ଶୁଣ ସୁଜନ ।
ରବିସୁତା ଦିଶେ ଅତି ଶୋଭନ ।
ଯେସନେ ଉପମା ପରତେ ମନ ।
ନିଶୟେ ଏହୁ ରମଣୀ ରତନ ।
କି ବୀଚି କୁନ୍ତଳ,
ନବ ସରସିଜ ମୁଖ ମଣ୍ଡଳ । " ( ୨/୧ )

ରାଧା ସହଚରୀମାନଙ୍କ ସହିତ ଯମୁନା ଜଳରେ ସ୍ନାନ କରିବାର ଦୃଶ୍ୟ କବି ଲେଖନୀ ସ୍ପର୍ଶରେ ଅତୀବ ମନୋରମ ହୋଇ ଉଠିଛି । ଏହି ଅବସରରେ କବି ନାରୀ ରୂପ ଲାବଣ୍ୟ ବର୍ଣ୍ଣନା କରି କାବ୍ୟଟିକୁ ଜୀବନ୍ତ କରି ତୋଳିଛନ୍ତି । ସ୍ନାନ ପରେ ସଦ୍ୟସ୍ନାତା ନାରୀ ଆର୍ଦ୍ର ଶୁକ୍ଳବସ୍ତ୍ର ପରିଧାନ କରି ପ୍ରତ୍ୟାବର୍ତ୍ତନ କରୁଥିବା ଦୃଶ୍ୟକୁ ବର୍ଣ୍ଣନା କରିବାକୁ ଯାଇ କବି ଉଲ୍ଲେଖ କରିଛନ୍ତି :—

" ଏମନ୍ତ ସାରିଣ ଉଦକ ଲୀଳା ।
ବାହାର ହୋଇଲେ ସକଳ ବାଳା ।
ଆର୍ଦ୍ର ଶୁକ୍ଳପଟ୍ଟ ବିଗ୍ରହେ ମିଶି ।
ଫୁଟିଣ ପୟୋଧର ବିଧୁ ଦିଶି ।
ଶିବାଶିବ ବେନି,
ମନୋରମ ଦିଶେ ଚନ୍ଦନ ଘେନି ।
କନକ ଘଟେ ଅମୃତ ପୁରେଇ ।
କି ଅବା ବିଧାତା ଅଛଇ ଥୋଇ ।
ତହିଁ ଅଗ୍ରରେ ମୁଦ ଦେଇଅଛି ।
ତେଣୁ ଅଗ୍ରଭାଗ ଶ୍ୟାମ ହୋଇଛି ।
କି ଅବା ବାଟୁଳି
ମଦନ ରଖିଅଛି ଯତ୍ନେ ଭଳି । (୨/୧୫-୧୭)

ତୃତୀୟ ଛାନ୍ଦରେ ସ୍ନାନାନ୍ତେ ରାଧା ଫେରି ଆସିବା ବେଳେ କାଳିନ୍ଦୀ କୂଳରେ ଅପରୂପ ଲାବଣ୍ୟ ମଣ୍ଡିତ ଶ୍ରୀକୃଷ୍ଣଙ୍କୁ ଦେଖି ବିହ୍ୱଳିତା ହୋଇଛନ୍ତି । କୃଷ୍ଣଙ୍କର ଅପରୂପ ସୌନ୍ଦର୍ଯ୍ୟ, ବଙ୍କିମଚାହାଣୀ, ଅଧରରେ ମୁରଲୀ ରାଧା ପ୍ରାଣକୁ ଆକୁଳିତ ତଥା ବ୍ୟାକୁଳିତ କରିଛି । ଫଳରେ ରାଧାଙ୍କ ପ୍ରାଣରେ ଦର୍ଶନ ଜନିତ

ପୂର୍ବରାଗ ସୃଷ୍ଟି ହୋଇଛି । କେବଳ ରାଧା ନୁହନ୍ତି, କୃଷ୍ଣଙ୍କ ମନ ମଧ୍ୟ ରାଧାଙ୍କର ରୂପରାଗ ଦ୍ୱାରା ଆକୃଷ୍ଟ ହୋଇଛି । ଉଭିରି ଚକ୍ଷୁର ମିଳନ ପରେ ସ୍ତମ୍ଭ, ସ୍ୱେଦ ରୋମାଞ୍ଚ ଆଦି ବିଭିନ୍ନ ସାତ୍ତ୍ୱିକ ବିକାର ଉଭୟଙ୍କ ପ୍ରାଣକୁ ଆପ୍ଲୁତ କରିଛି । ରାଧାପ୍ରାଣ ଏଥିରେ ଯେତିକି ମ୍ରିୟମାଣ ହୋଇଛି କୃଷ୍ଣଙ୍କ ସହିତ ମିଳିତ ହେବାର ଆକାଂକ୍ଷା ସେତିକି ଜାଗ୍ରତ ହୋଇଛି । ତେଣୁ ଉପେନ୍ଦ୍ରଭଞ୍ଜ ଏହାର ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି :—

" ବିଧିର କରଣ ଗୋଳା ମହାଦେବ ଚିନ୍ତ ।
ଯେ ପୁରୁଷ ଅଙ୍ଗ ସଙ୍ଗେ ଲଭିବି ମୁକତି ।।
ପୂର୍ବ ଜନ୍ମେ ମୁହିଁ ଯେବେ ତପ କରିଥିବି ।
ପ୍ରାଣନାଥ କରି ତେବେ ଏହାକୁ ପାଇବି ।।
ନିଜ ପତିରେ ମୋହର ନ ବଳଇ ମନ ।
କେମନ୍ତେ ଜାଣିବି ମୁଁ ଏ କାହାର ନନ୍ଦନ ।।
ଏମନ୍ତେ ଚିତ୍ତ ଅଳସ ଛଳେ ଟେକି ଭୁଜ ।
ଦେଖାଇବା ଇଚ୍ଛା କରି ଅଧିକ ଉରଜ ।। "
( ୩/୨୪-୨୮ )

ରାଧାକୃଷ୍ଣ ପରସ୍ପରର ରୂପବାଗ ଦ୍ୱାରା ଆକୃଷ୍ଟ ହୋଇ-ଛନ୍ତି । କୃଷ୍ଣଙ୍କ ରୂପାନଳରେ ମୂର୍ଚ୍ଛାପ୍ରାୟ ରାଧାଙ୍କୁ ସଖୀମାନେ ବହୁକଷ୍ଟରେ ସଦନକୁ ନେଇଛନ୍ତି ।

ଚତୁର୍ଥ ଛାନ୍ଦରେ କବି ରାଧାଙ୍କର ବିରହକାଳୀନ ଅବସ୍ଥା କଥା ବର୍ଣ୍ଣନା କରିଛନ୍ତି । ବିରହରେ ଜର୍ଜ୍ଜରିତା ହୋଇ ରାଧା ପବନକୁ ନିନ୍ଦା କରି କହିଛନ୍ତି :—

" ଅସୁର ଜନନୀଠାରୁ ହୋଇଅଛୁ ଜାତ ।
ସେ ଗୁଣ କେମନ୍ତେ ଏବେ ନ କରିବୁ ଖ୍ୟାତ ।।
ଜଗତ ପ୍ରାଣ ଯେ ବୋଲେ ସେ ନ ବୋଲେ କିଛି ।
ହରବେନି ଅକ୍ଷର ମୁଁ ପ୍ରାନ୍ତରେ ମଣୁଛି ।।
( ୪/୧୨, ୧୩ )

ଛାନ୍ଦର ଶେଷରେ ରାଧାକୃଷ୍ଣଙ୍କର ପରିଚୟ ଆଦି ଜାଣିବାପାଇଁ ସଖୀକୁ ବିଭିନ୍ନ ପ୍ରଶ୍ନବାଣରେ ଜର୍ଜ୍ଜରିତା କରିଛନ୍ତି ।

ରାଧାଙ୍କ ମନର ଆକୁଳତା ତଥା ବ୍ୟାକୁଳତାକୁ ବୁଝିପାରି ସଖୀ ନଟନାଗର କୃଷ୍ଣଙ୍କ ପାଖକୁ ଯିବାକଥା ପଞ୍ଚମ ଛାନ୍ଦରେ ବର୍ଣ୍ଣନା କରାଯାଇଛି । କୃଷ୍ଣରୂପ ସଂଦର୍ଶନରେ ମୁଗ୍ଧା ସଖୀ କୃଷ୍ଣଙ୍କ ରୂପ ମାଧୁରୀକୁ ବିରୋଧାଭାସରେ ଚିତ୍ରଣ କରିଛି । ତା'ପରେ ପ୍ରାଣସଖୀ ରାଧାର ବିରହ ଦଶାକଥା କୃଷ୍ଣଙ୍କ ଆଗରେ ବର୍ଣ୍ଣନା କରିବା ସଂଗେ ସଂଗେ ରାଧାସହ ମିଳିତ ହେବାକୁ ବିନମ୍ର ନିବେଦନ କରିଛି । କୃଷ୍ଣ ସଖୀର ବିନମ୍ର ବଚନରେ ମୁଗ୍ଧ ହୋଇ ରାଧାଙ୍କ ସହିତ କୁଞ୍ଜରେ ମିଳିତ ହେବା ନିମନ୍ତେ ସ୍ୱୀକୃତି ପ୍ରଦାନ କରିବା ପରେ ସଖୀ ପ୍ରତ୍ୟାବର୍ତ୍ତନ କରିଛି । ପ୍ରତ୍ୟା-ବର୍ତ୍ତନ କରି ପ୍ରାଣସଖୀ ରାଧାଙ୍କୁ ସମସ୍ତ କଥା ଅବଗତ କରାଇଛି ।

ଷଷ୍ଠ ଛାନ୍ଦରେ ସଖୀ ରାଧାଙ୍କ ଆଗରେ କୃଷ୍ଣଙ୍କର ବିରହ ବେଦନା କଥା ବର୍ଣ୍ଣନା କରି ରାଧାଙ୍କୁ ସଙ୍ଗରେ ଧରି ଅପୂର୍ବ ଶୋଭା ବିମଣ୍ଡିତ କେଳିକୁଞ୍ଜରେ ପହଞ୍ଚିଛି । ପ୍ରାଣପ୍ରିୟ କୃଷ୍ଣଙ୍କ ଦର୍ଶନରେ ତଥା ଚାଟୂକ୍ତି ଶ୍ରବଣରେ ରାଧା ପୁଲକିତା ହୋଇଛନ୍ତି । କୃଷ୍ଣ ପୁଲକିତା ରାଧାଙ୍କୁ ମାଧବୀଲତାତଳେ କୋଳରେ ଧରି ବିଭିନ୍ନ ଅଳଙ୍କାରରେ ସଜ୍ଜିତ କରିବାର ଦୃଶ୍ୟକୁ କବି ଯମକାଳାଂକାରରେ ବର୍ଣ୍ଣନା କରିଛନ୍ତି । କବିଙ୍କ ଭାଷାରେ :—

" ଏମନ୍ତ ମାଧବ ସମୟେ ମାଧବ ମାଧବୀ
ମାଳା ପ୍ରାଏ ଘେନି ।
ମାଧବୀ ତଳେ କୋଟଳ ଘେନି ରାଧାଙ୍କୁ
ବେଶ କରନ୍ତ ଯଦୁମଣି ।
ସକଳ, ଅଳଂକାରେ କରି ମଣ୍ଡନ ।
ତିଳକେ ତିଳକ ତିଳକ ରଞ୍ଜିଣ
ତିଳକରେ କରି ଶୋଭନ ।" (୬/୨୨)

ରାଧାଙ୍କୁ ବେଶ କରିବା ପରେ ସପ୍ତମ ଛାନ୍ଦରେ କବି ରାଧାକୃଷ୍ଣଙ୍କର ମିଳନର କଥା ବର୍ଣ୍ଣନା କରିଛନ୍ତି । ମିଳନକାଳୀନ ବର୍ଣ୍ଣନା କବି ଲେଖନୀ ସ୍ପର୍ଶରେ ଅତ୍ୟନ୍ତ ସତେଜ ହୋଇ ଉଠିଛି । କବି ରାଧାକୃଷ୍ଣଙ୍କର ବିପ-ରୀତ ରତି କାଳୀନ ଦୃଶ୍ୟକୁ ଉଲ୍ଲେଖ କରିବାକୁ ଯାଇ କହିଛନ୍ତି :—

" କୁସୁମ ଶେଯେ ଆନନ୍ଦ ସେ ଯେ
ବିଳାସ ପ୍ରକାଶିଲେ ।
ନାଗରୀ ଈଶ ଉରଜ ଈଶ କରେ ମର୍ଦ୍ଦନ କଲେ ।।
ନୀବି ନିବନ୍ଧ କରି ବିବନ୍ଧ ସୁରତି ଆରମ୍ଭିଲେ ।
ମାରକୁ ମାର ବୋଲି ନୂପୁର
ସଧୀରେ ଧ୍ୱନି କଲେ ।।
ମୁଖରେ ମୁଖ ପରମ ସୁଖ କରରେ କର କରି ।
ଗଣ୍ଡେ ଚୁମ୍ବନ ବିହି ବହନ ବାମେ ଚିବୁକ ଧରି ।।
* * * *
ତମାଳ ତରୁ ଉପରେ ଉଠୁ କିବା ସେ ହେମବଲ୍ଲୀ ।
ମର୍କତ ଭୂମି ପରେ କି ଖେଳା କରେ ଚଞ୍ଚଳାବଲ୍ଲୀ ।।
କରନ୍ତେ ନୃତ୍ୟ ଉନମଦନ
ଉଣ୍ଡେ ଖେଳ କି ଖେଳେ ।
ଗିରି ବିଉରି ଉୟରେ ହରି ଧରନ୍ତ କର ତଳେ ।।
ଇନ୍ଦ୍ର ବିବାଦେ ଗୋବର୍ଦ୍ଧନକୁ ପୂର୍ବରେ ଥିଲେ ଧରି ।
କାମ ବିବାଦେ ଧଇଲେ ଏବେ
ବେନି ରତନ ଗିରି ।। " (୭/୪-୯)

କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ରାଧାକୃଷ୍ଣଙ୍କ କୁଞ୍ଜ-ବିହାର ଘଟଣାକୁ ଏଭଳି ଲୀଳାତ୍ମକ ଭାବରେ ଉପସ୍ଥାପନ କରି ନିଜ କାବ୍ୟ ନାମର ସାର୍ଥକତା ପ୍ରତିପାଦନ କରିଛନ୍ତି । କାବ୍ୟର ଭାଷା, ଭାବ ତଥା ପରିବେଷଣ ଶୈଳୀରୁ ଏହା କବିଙ୍କର ପ୍ରାରମ୍ଭିକ ରଚନାବଳୀ ମଧ୍ୟରେ ଅନ୍ୟତମ ଭଳି ମନେହୁଏ । ଏଥିରେ ଅଳଂକାରର ପ୍ରାଚୁର୍ଯ୍ୟ, ରସଚର୍ଯ୍ୟାର ମାଧୁର୍ଯ୍ୟ ସହିତ ଶବ୍ଦ ସଂଯୋଜନାର ଐଶ୍ୱର୍ଯ୍ୟ ପାଠକ ପ୍ରାଣକୁ ପୁଲକିତ କରେ । ଭଞ୍ଜ ଲେଖନୀର ପରାକାଷ୍ଠା ଏହି କାବ୍ୟକୁ ମହିମାମଣ୍ଡିତ କରିଥିଲେ ମଧ୍ୟ କାବ୍ୟଟି ଆଜି ପର୍ଯ୍ୟନ୍ତ ଲୋକଲୋଚନକୁ ଆସିପାରି ନ ଥିବା ଅତ୍ୟନ୍ତ ପରି-ତାପର ବିଷୟ ।

●



# ପାଠାଲୋଚନା ପ୍ରକ୍ରିୟା ଓ ଲାବଣ୍ୟବତୀ

● ପ୍ରଫେସର ଡଃ କୃଷ୍ଣଚରଣ ସାହୁ
ପ୍ଲଟ ନମ୍ବର-୨୨୬୨ ଏ ଡାକ୍ତର ବିଭୀଷଣ ମହର
ପାଣ ପୁରୁଣା ଭୁବନେଶ୍ୱର ପିନ୍—୭୫୧୦୦୨



ପାଠାଲୋଚନା ପ୍ରାଚୀନ ଓ ମଧ୍ୟ କାଳୀନ ସାହିତ୍ୟକୁ ଅନୁଶୀଳନ କରିବା ପାଇଁ ଏକ ଅଭିନବ ଆୟୁଧ । ଚତୁର୍ଦ୍ଦଶ ବା ପରବର୍ତ୍ତୀ ଶତାବ୍ଦୀରେ ରଚିତ ଗ୍ରନ୍ଥରାଜି ମୂଳରୂପରେ ଉପଲବ୍ଧ ହୁଏ ନାହିଁ । ଲିପିକାର ମାନେ ମୂଳଗ୍ରନ୍ଥରୁ ବା ମୂଳଗ୍ରନ୍ଥର ଅନୁଲିପିରୁ ନୂତନ ଅନୁଲିପି ପ୍ରସ୍ତୁତକରି ଯୁଗ ଯୁଗ ଧରି ପ୍ରାଚୀନ କବିମାନଙ୍କ ରଚନା ବଳୀକୁ ରକ୍ଷା କରି ଆସିଛନ୍ତି । ଏହି ରକ୍ଷାକରିବା ପ୍ରକ୍ରିୟା ମଧ୍ୟରେ ସେମାନଙ୍କ ଜ୍ଞାତ ସାରରେ ବା ଅଜ୍ଞାତସାରରେ ବହୁ ଅପପାଠ ଏଥିରେ ପ୍ରବେଶ କରିଯାଇଛି । ଯେତେବେଳେ ଏ ଦେଶରେ ଇଂରେଜ ଶାସନ ପ୍ରତିଷ୍ଠିତ ହେଲା, ସେତେବେଳେ ବହୁ ଇଉରୋପୀୟ ବିଦ୍ୱାନ ପ୍ରାଚୀନ ଗ୍ରନ୍ଥରାଜିର ଅନ୍ୱେଷଣ କରିବାକୁ ଆରମ୍ଭ କଲେ । ସେତେବେଳେ ସେମାନେ ଦେଖିଲେ ଉପଲବ୍ଧ ହେଉଥିବା ଅନୁଲିପି ସବୁ ବହୁ ପ୍ରମାଦ ଓ ଅପପାଠରେ ପରିପୂର୍ଣ୍ଣ । ଗ୍ରନ୍ଥର ବହୁ ଅଂଶ ଅବୋଧ୍ୟ । ସେଥିପାଇଁ ସେମାନେ ଅନ୍ୟ ଏକ ପାଠର ଅନ୍ୱେଷଣ କଲେ । ସେଥିରେ ମଧ୍ୟ ସେହିପରି କେତେକ ଅପପାଠ ଦେଖି ସେମାନେ ଏହାର ଶୁଦ୍ଧପାଠ ଜାଣିବା ପାଇଁ ଚେଷ୍ଟାକଲେ । ପ୍ରଥମେ ଏ ପ୍ରକାର ଅନ୍ୱେଷଣର ସୁବିଧା ବା ସୁଯୋଗ ନଥିଲା । ରେଳଯାତ୍ରାର ପ୍ରଚଳନ ପରେ ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ଯିବା ଯେପରି ସହଜସାଧ୍ୟ ହେଲା, ସେହିପରି ଅନ୍ୟ ଅଞ୍ଚଳର ପ୍ରତିଲିପି ଦେଖିବା ମଧ୍ୟ ସମ୍ଭବ ହୋଇଥିଲା । ଏହାପରେ ଫଟୋଷ୍ଟାଟ୍ କପି ଓ ଜେରକ୍ସ କପିର ସୁବିଧା ଉପଲବ୍ଧ ହେଲା । ପରିଶେଷରେ ଭାରତର ବିଭିନ୍ନ ସ୍ଥାନରୁ ପାଣ୍ଡୁଲିପି ସଂଗ୍ରହ କରି ସେ ସବୁର ତୁଳନା କରି ଶୁଦ୍ଧପାଠ ନିର୍ଣ୍ଣୟ କରିବା ପାଇଁ ବିଦ୍ୱାନ ମାନେ ଚେଷ୍ଟାକଲେ । ଏହିଯେଉଁ ପ୍ରକ୍ରିୟା ଆରମ୍ଭ ହେଲା, ଏହାରି ନାମ ହେଲା ପାଠାଲୋଚନା ।

ପ୍ରଥମେ ସଂସ୍କୃତ ସାହିତ୍ୟରୁ ଏ କାର୍ଯ୍ୟ ଆରମ୍ଭ ହୋଇଥିଲା । F. Edgerton, 1924 ମସିହାରେ New Haven ରୁ American Oriental Series No - 3 - 4 ରେ Panchatantra reconstructed ନାମକ ପୁସ୍ତକ ପ୍ରକାଶିତ ହେଲା । ଗ୍ରୀକ୍ ଓ ଲାଟିନ୍ ଭାଷାର ସଂପାଦନ କଳାଠାରୁ ସଂସ୍କୃତ ଭାଷାର ସମସ୍ୟା ସବୁ ଅଲଗା ଥିଲା । ସଂସ୍କୃତ ଭାଷା ବ୍ୟାକରଣରେ ନିର୍ଦ୍ଦିଷ୍ଟ ସୂତ୍ର ଦ୍ୱାରା ଆବଦ୍ଧ । ଏହାର ପ୍ରାଚୀନ ପରମ୍ପରା ଅନୁଯାୟୀ ଶୁଦ୍ଧ ପାଠ ପ୍ରତି ଅନୁଲିପିକାରମାନେ ବିଶେଷ ଯତ୍ନବାନ ଥିଲେ । ସେଥିପାଇଁ ଏଥିରେ ପ୍ରବେଶ କରିଥିବା ଅପପାଠ ଏକ ସ୍ୱତନ୍ତ୍ର ଧରଣର ଥିଲା । ସେ ସେଥିପାଇଁ ସଂସ୍କୃତ ପାଇଁ ଆବଶ୍ୟକ ହେଉଥିବା କେତେକ ନୂତନ ସୂତ୍ରକୁ ପଞ୍ଚତନ୍ତ୍ରର ଶୁଦ୍ଧପାଠ ଆଣିବାପାଇଁ ପ୍ରୟୋଗ କଲେ । ତାଙ୍କ ଯୁକ୍ତି ଓ ପରୀକ୍ଷାରେ କେତେକ ଭ୍ରମ ପ୍ରମାଦ ଥିବା ସ୍ୱାଭାବିକ ଥିଲା । କିନ୍ତୁ ପାଠାଲୋଚନା କ୍ଷେତ୍ରରେ

ତାଙ୍କର ଦାନ ଅବିସ୍ମରଣୀୟ । ତାଙ୍କ ଦ୍ୱାରା ପ୍ରୋତ୍ସାହିତ ହୋଇ ବହୁ ଇଉରୋପୀୟ ତଥା ଭାରତୀୟ ବିଦ୍ୱାନ ଏ କ୍ଷେତ୍ରରେ ନୂଆ ନୂଆ ଗ୍ରନ୍ଥ ନେଇ ଏ ଧରଣର ପରୀକ୍ଷା କଲେ, ନୂଆ ନୂଆ ତଥ୍ୟର ଆବିଷ୍କାର ହୋଇ ଏହି ପାଠ ଲୋଚନା ପଦ୍ଧତି ସାହିତ୍ୟ ଆଲୋଚନା କ୍ଷେତ୍ରରେ ଏକ ନୂତନ ପଥ ଉନ୍ମୁକ୍ତ କଲା । ଏ କ୍ଷେତ୍ରରେ ଭାରତୀୟ ବିଦ୍ୱାନଙ୍କ ମଧ୍ୟରେ V. S. Sukthankar ଙ୍କ ଅବଦାନ ବିଶେଷ ଭାବେ ସ୍ମରଣୀୟ । ସେ ମହାଭାରତ ସଦୃଶ ଏକ ବିଶାଳ ଗ୍ରନ୍ଥର ସମ୍ଭାବନା କାର୍ଯ୍ୟ ବହୁ ବିଦ୍ୱାନଙ୍କୁ ଏକତ୍ର କରି ଆରମ୍ଭ କଲେ । ସମସ୍ତ ଭାରତରୁ ମହାଭାରତର ଅନୁଲିପି ସବୁ ସଂଗୃହୀତ ହୋଇ କାର୍ଯ୍ୟ ଆରମ୍ଭ ହେଲା । ଏହିକାର୍ଯ୍ୟ ପାଇଁ ସେ ଯେଉଁ ପରୀକ୍ଷା ମୂଳକ ଖସଡ଼ା ପ୍ରସ୍ତୁତ କରିଥିଲେ, ତାହା ହେଲା ଆଦିପର୍ବର ମୁଖବନ୍ଧ ବା Prolegomena । ଏଥିରେ ସଂସ୍କୃତ ଭାଷାର ପାଠାଲୋଚନା ପଦ୍ଧତିର ବିସ୍ତୃତ ବିଶ୍ଳେଷଣ 'ପ୍ରଦାନ କରଯାଇଥିଲା । ଏହି ମହାନ୍ କାର୍ଯ୍ୟ କଲାବେଳେ, ସେ ତାଙ୍କ ପୂର୍ବରୁ ଏ ଦିଗରେ କାର୍ଯ୍ୟ କରିଥିବା R.Pischel, Stenkonow, ଲୁଡ୍‌ବିଗ୍ ଏଲସ୍‌ଡାଫଙ୍କ ଆଲୋଚନାର ସାହାଯ୍ୟ ନେଇଥିଲେ । ପିସ୍ଖେଲ 1877 ମସିହାରେ ଆଠୋଟି ପ୍ରତିଲିପି ସାହାଯ୍ୟରେ ଶକୁନ୍ତଳାର ଶୁଦ୍ଧପାଠ ନିର୍ଣ୍ଣୟ କଲେ । ଏହାପରେ ୧୯୦୧ ରେ Stenkonow କର୍ପୂର ମଞ୍ଜରୀରେ ଏବଂ ଲୁଡ୍‌ବିଗ୍ ଏଲସ୍‌ଡାଫ ପୁଷ୍ପଦନ୍ତଙ୍କ ହରିବଂଶ ପୁରାଣର ସମ୍ପାଦନା କରିଥିଲେ । ସୁକଥନକରଙ୍କ ପରି P. L. Vaidya [ 1937 ] ପୁଷ୍ପଦନ୍ତଙ୍କ ମହାପୁରାଣ ଟୋଡର ମଲ୍ଲଙ୍କ ମହାବୀର ଚରିତ [ 1928 ], R. G. Bhandarkar ଙ୍କ ମାଳତୀ ମାଧବ [ 1876 ] P. N. Upadhyaya ପରମାତ୍ମା ପ୍ରକାଶର ସମ୍ପାଦନା କରି ଏହି ପଦ୍ଧତିକୁ ସୁପ୍ରତିଷ୍ଠିତ କଲେ । ସଂସ୍କୃତ ସାହିତ୍ୟରେ ଏହି ପଦ୍ଧତି ଲୋକପ୍ରିୟ ହେବାପରେ ଆଧୁନିକ ଭାରତୀୟ ଭାଷାର ବିଭିନ୍ନ ବିଦ୍ୱାନ ନିଜ ଭାଷାର ବିଭିନ୍ନ ଗ୍ରନ୍ଥର ପୁନରୁଦ୍ଧାର ଦିଗରେ ଆଗଭର ହେଲେ । ଏହି ପ୍ରଚେଷ୍ଟାର ଫଳ ସ୍ୱରୂପ ମାତାପ୍ରସାଦ ଗୁପ୍ତ " ରାମ ଚରିତ ମାନସ " ପଦ୍ମାବତ, V. S. Agrawal ପଦ୍ମାବତ, R. P. Tiwari କବୀର ପଦାବଳୀର ସମ୍ପାଦନା କରି ହିନ୍ଦୀ ସାହିତ୍ୟକୁ ସମୃଦ୍ଧ କଲେ ।

ଓଡ଼ିଶାରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ହିଁ ଏ କ୍ଷେତ୍ରରେ ଅଗ୍ରଗଣ୍ୟ । ପଞ୍ଚଦଶ ଶତାବ୍ଦୀରୁ ଅଷ୍ଟାଦଶ ଶତାବ୍ଦୀର ପର୍ଯ୍ୟନ୍ତ ବହୁ ଗ୍ରନ୍ଥର ସେ ସମ୍ପାଦନା କଲେ । ପ୍ରତ୍ୟେକ ଗ୍ରନ୍ଥର ଏକାଧିକ ଅନୁଲିପି ସଂଗ୍ରହ କରି ସେ ସବୁର ତୁଳନା ଦ୍ୱାରା ସେ ପାଠ ନିର୍ଣ୍ଣୟର ଆବଶ୍ୟକତା ସମ୍ପର୍କରେ ସେ ଯତ୍ରତତ୍ର ବହୁ ସଂକେତ ପ୍ରଦାନ କରିଥିଲେହେଁ, ଓଡ଼ିଶା ପରି ଦରିଦ୍ର ଦେଶରେ ସେ ସବୁର ବ୍ୟାଖ୍ୟା ବା ବିଶ୍ଳେଷଣ ଦେବା ବୋଧହୁଏ ତାଙ୍କ ପାଇଁ ସମ୍ଭବ ନଥିଲା । ସେଥିପାଇଁ ସେ ଏଇ କାର୍ଯ୍ୟକୁ ବିଭିନ୍ନ ଦୃଷ୍ଟିରୁ ସଂକ୍ଷେପ କରି ପ୍ରକାଶ କଲେ । ତାଙ୍କ ସମ୍ପାଦନା ପ୍ରକ୍ରିୟାକୁ ନିମ୍ନ ଭାବେ ବିଭକ୍ତ କରାଯାଇପାରେ ।

( ୧ ) କୌଣସି ଏକ ଗ୍ରନ୍ଥର ବିଭିନ୍ନ ପ୍ରତିଲିପି ସଂଗ୍ରହ । ଏ କାର୍ଯ୍ୟ ଆଦୌ ସହଜସାଧ୍ୟ ନ ଥିଲା । ସେଥିପାଇଁ ତାଙ୍କୁ ସହଜରେ ମିଳିପାରିଥିବା କେତେକ ପୋଥିର ସେ ସାହାଯ୍ୟ ନେବା ପାଇଁ ବାଧ୍ୟ ହୋଇଥିଲେ । ତେଣୁ ତାଙ୍କ ସଂଗ୍ରହ କାର୍ଯ୍ୟ କେବଳ ଗୋଟିଏ ଅଞ୍ଚଳରେ ହିଁ ସୀମାବଦ୍ଧ ହୋଇଥିଲା ।

( ୨ ) ପୋଥି ସମ୍ପାଦନାର ନିୟମ ରକ୍ଷାକରି ସେ ତାଙ୍କ ସଂଗୃହୀତ ପୋଥିର ପ୍ରାପ୍ତିସ୍ଥାନ, ସମୟ ଓ ଆକାର ପ୍ରକାର ଇତ୍ୟାଦିର ସାମାନ୍ୟ ପରିଚୟ ଦେଇଥିଲେହେଁ, ସେ ସବୁର ଅନ୍ତରଙ୍ଗ ପରୀକ୍ଷାର ଫଳାଫଳ ପ୍ରକାଶ କରି ପାରି ନ ଥିଲେ ।

( ୩ ) ଏହାପରେ ସେ ବିଭିନ୍ନ ଅନୁଲିପିକୁ ପରୀକ୍ଷା କରି ପାଠ ନିର୍ଣ୍ଣୟ କଲେ ଓ ପାଠାନ୍ତର ମଧ୍ୟ ପ୍ରଦାନ କରିଥିଲେ, ସବୁ ସ୍ଥାନରେ ପାଠାନ୍ତର ଦେବା ବି ସମ୍ଭବ ନ ଥିଲ । କିନ୍ତୁ ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ଅଗାଧଜ୍ଞାନ, ପାଣ୍ଡିତ୍ୟ ତୀକ୍ଷ୍ଣ ବିସ୍ତର ବୁଦ୍ଧି, ପ୍ରାଚୀନ ଗ୍ରନ୍ଥ ସହ ଆତ୍ମୀୟତା ତାଙ୍କୁ ଏ ଦିଗରେ ଯଶସ୍ୱୀ କରି ପାରିଥିଲ ଏବଂ ସେ ଓଡ଼ିଆ ସାହିତ୍ୟରେ ପାଠାଲୋଚନା ବିଦ୍ୟାର ଅଗ୍ରଦୂତ ଥିଲେ । ତାଙ୍କ ସଂପାଦନାରେ ପୁରାଣ, କାବ୍ୟ, ଗୀତା, କବିତା ଓ ସଂହିତା ଅର୍ଥାତ୍ ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ବିଭାଗ ପରିପୁଷ୍ଟ ହୋଇଥିଲ ।

ପାଠାଲୋଚନା ପ୍ରକ୍ରିୟା ସମ୍ବନ୍ଧରେ ମତ ଦେଇ F. W. Hall କୁହନ୍ତି, " Many People send to regard textual Criticism as a disease, but it is neither a disease nor a Science, but Simply the application of common sense to a class of problems which leasecf all imaginarries whose evidance vest upon the authority of manuscript document " ଏହି ଉକ୍ତିକୁ ନିମ୍ନଭାବେ ବିଶ୍ଳେଷଣ କରଯାଇ ପାରେ । ଏହାର ପ୍ରଥମ ଉପାଦାନ ହେଲ ଉପଲବ୍ଧ ଅନୁଲିପି ବା manuseript ଏହାର ପ୍ରାମାଣିକତା ଉପରେ ବିଶ୍ୱାସ ରଖି କାର୍ଯ୍ୟ ଆରମ୍ଭ କରଯାଇଥାଏ । କୌଣସି ପାଣ୍ଡୁଲିପିରେ ପ୍ରବେଶ କରିଥିବା ଅପପାଠ କେବଳ ଅନ୍ୟ ପାଣ୍ଡୁଲିପି ସାହାଯ୍ୟରେ ଦୂର କରଯାଏ । ସଂପାଦକର ପାଣ୍ଡିତ୍ୟ ପ୍ରଦର୍ଶନ ପାଇଁ ଏଥିରେ ପ୍ରାୟ ସ୍ଥାନ ନ ଥାଏ । କେବଳ ସାଧାରଣ ବିସ୍ତର ବୋଧ ବା Commonsence ପ୍ରୟୋଗ କଲେ ଏ ସବୁ ଅପପାଠ ଅପସାରିତ ହୋଇଥାଏ । ଏଥିରେ କୁହାଯାଇଥିବା disease ବା ରୋଗ ହେଉଛି, ପୋଥିରେ ଥିବା ପ୍ରମାଦ । ମୂଳଗ୍ରନ୍ଥ ଯେତେଥର ନକଲହୁଏ ସେଥିରେ ପ୍ରମାଦର ସଂଖ୍ୟା ସେତିକି ବୃଦ୍ଧି ପାଇଥାଏ । ମୂଳପାଠରେ ଏହି ସବୁ ପ୍ରମାଦ ବିଭିନ୍ନ ଭାବେ ପ୍ରବେଶ କରେ । ଆଲୋଚକମାନେ ଏହାକୁ ତିନି ଭାଗରେ ବିଭକ୍ତ କରିଛନ୍ତି ।

( ୧ ) ସନ୍ଦେହ ଓ ଏହାର ନିରାକରଣ ପାଇଁ ପ୍ରଚେଷ୍ଟା, ଲିପିକାର ନୂତନ ଅନୁଲିପି ପ୍ରସ୍ତୁତ କଲବେଳେ ଅନେକ ସମୟରେ ମୂଳପାଠକୁ ଠିକ୍ ଭାବେ ପଢ଼ି ପାରେ ନାହିଁ ।ଫଳରେ ବିଭିନ୍ନ ପ୍ରକାର ଅପପାଠର ସୃଷ୍ଟି ହୁଏ । ଆଲୋଚକଙ୍କ ମତରେ ଏହା ତେର ପ୍ରକାରର ।

୧- ଅକ୍ଷର ସାଦୃଶ୍ୟ - ଶ ଣ, କ ହ, ଗ-ସ, ହି-ଇ, ପ—ଗ, ତ ପ, ର, ଉ-ଭ, ।

୨- ଶବ୍ଦ ସାଦୃଶ୍ୟ - ଏକ ଶବ୍ଦ ସ୍ଥାନରେ ଅନ୍ୟ ଶବ୍ଦ ଗ୍ରହଣ ରୁଚିତ - ରଚିତ, ବୁଦ୍ଧ-ବୁଧ ।

୩- ସଂଯୁକ୍ତ ଶବ୍ଦର ଅପବ୍ୟାଖ୍ୟାନ -ପ୍ରମାଦ ବଶତଃ ଦୁଇ ଶବ୍ଦର ସଂଯୋଗ, ବା ସ୍ୱତନ୍ତ୍ରୀକରଣ । ଗୋଟିଏ ବାକ୍ୟ ସହ ଅନ୍ୟ ବାକ୍ୟର ମିଶ୍ରଣ । ଅକ୍ଷର, ଶବ୍ଦ ବା ବାକ୍ୟର ସ୍ଥାନ ପରିବର୍ତ୍ତନ ।

୪- ଉଚ୍ଚାରଣଗତ ପ୍ରମାଦ ।

୫- ସଂଖ୍ୟାଗତ ପ୍ରମାଦ ।

୬- ନାମଗତ ପ୍ରମାଦ ।

୭- ପର୍ଯ୍ୟାୟବାଚୀ ଶବ୍ଦର ପ୍ରୟୋଗ ।

୮- ଅପରିଚିତ ଶବ୍ଦସ୍ଥାନରେ ପରିଚିତ ଶବ୍ଦର ବ୍ୟବହାର ।

୯- ପ୍ରାଚୀନ ବନାନ ସ୍ଥାନରେ ଆଧୁନିକ ବନାନ ।

୧୦- ଶବ୍ଦ ସଂଶୋଧନ ।

୧୧- ପାଠ, ଶବ୍ଦ ବା ପଦ ପରିତ୍ୟାଗ ।

୧୨- ପୁନରାବୃତ୍ତି ।

୧୩- ନିଜ ରୁଚି ଅନୁଯାୟୀ ଶବ୍ଦର ବ୍ୟବହାର

ଏହି ହେଲା ସଂପାଦନାର ରୋଗ ଓ ଏହାକୁ ନିରାକରଣ କରିବା ସଂପାଦକର ଦାୟିତ୍ୱ । ସଂପଦକ ଏହି ଦୁରୂହ କାର୍ଯ୍ୟକୁ ଚାରୋଟି ପଦ୍ଧତିରେ ଦୂରକରେ ।

୧- ସଂଗୃହୀତ ଅନୁଲିପି ସବୁକୁ ଏକତ୍ର କରି କାଳକ୍ରମ ଅନୁଯାୟୀ ସାକାରଣ ଓ ସାବଧାନତା ସହ ଅନୁଲିପି ପ୍ରସ୍ତୁତ କରିବା ।

୨- ଉକ୍ତ ଉପାଦାନରୁ ପ୍ରକୃତ ପାଠର ସଂଧାନ କରିବା ।

୩- ଗ୍ରନ୍ଥକାର ସମ୍ଭାବିତ ପାଠର ପୁନରୁଦ୍ଧାର ।

୪- ସମ୍ଭାବିତ ପାଠ ଓ ଅପପାଠ ବା ପାଠାନ୍ତରର ବିଶ୍ଳେଷଣ କରିବା-ଅର୍ଥାତ୍ ମୂଳସ୍ରୋତର ବିଭକ୍ତିକରଣ

ପୋଥିସବୁ ସଂଗ୍ରହ ହୋଇଯିବା ପରେ ସଂପାଦକ ପ୍ରଥମେ ଅନୁଲିପି ସବୁକୁ ବିଭିନ୍ନ ଭାବେ ବିଭାଗ କରିବାକୁ ହୋଇ ଥାଏ । ( କ ) କାଳକ୍ରମ ଅନୁଯାୟୀ ( ଖ ) ପରମ୍ପରା ଅନୁଯାୟୀ ( ଗ ) ଅନ୍ତରଙ୍ଗ ପରୀକ୍ଷା ବା ବହିରଙ୍ଗ ପରୀକ୍ଷା ଦ୍ୱାରା କାର୍ଯ୍ୟର ଏହି ପର୍ଯ୍ୟାୟରେ ପ୍ରତ୍ୟେକ ପାଣ୍ଡୁଲିପିର ବିଚ୍ୟୁତ ସବୁକୁ ଅନୁସୂଚିତ କରାଯାଏ । ଏହାପରେ ବିଭିନ୍ନ ପୋଥିରୁ ଏକ ନିର୍ଦ୍ଦିଷ୍ଟ ଅଂଶକୁ ନେଇ ତୁଳନାତ୍ମକ ବିଚାର ଦ୍ୱାରା ଆଦର୍ଶ ପୋଥି ସ୍ଥିର କରାଯାଏ ।

ତୃତୀୟ ପର୍ଯ୍ୟାୟ ହେଲା ପ୍ରକୃତ ପାଠାଲୋଚନା । ଯେତେବେଳେ ସଂପାଦକର ବୁଦ୍ଧି, ସାଧାରଣଜ୍ଞାନ, ପାଣ୍ଡିତ୍ୟ, ପରମ୍ପରା ପ୍ରୟୋଗ କରି ବିଭିନ୍ନ ପୋଥି ପାଠ ମଧ୍ୟରୁ ଗୋଟିଏକୁ ଗ୍ରହଣ କରେ ଏବଂ ସେହି ପାଠଟିକୁ ଗ୍ରହଣ କରିବାର କାରଣ ଓ ପ୍ରମାଣ ରୂପେ ପୋଥି ମଧ୍ୟରୁ, ପୋଥିର ସହାୟକ ଅନ୍ୟ ଗ୍ରନ୍ଥରୁ ଲେଖକଙ୍କ ସ୍ୱକୀୟ ପ୍ରୟୋଗ ରୀତି ଓ ବୈଶିଷ୍ଟ୍ୟରୁ ପ୍ରମାଣ ସଂଗ୍ରହ କରେ, ଏବଂ ଏହାପ୍ରାୟ ପୋଥି ପାଠକୁହିଁ ଆଦର୍ଶ ରୂପେ ଗ୍ରହଣ କରିଥାଏ ।

ପାଠାଲୋଚନା କ୍ଷେତ୍ରରେ ଦୁଇ ପ୍ରକାର ଆଲୋଚକ ପ୍ରାୟ ଦେଖିବାକୁ ମିଳିଥାନ୍ତି । ପ୍ରଥମ ଶ୍ରେଣୀୟ ଆଲୋଚକ Conservative ବା ଅନୁଦାର ବାଦୀ ଭାବେ ପ୍ରସିଦ୍ଧ । ଏମାନେ ବୈଜ୍ଞାନିକ ନିର୍ବାଚନ ବା ବ୍ୟାଖ୍ୟାକୁ ଆଧାର କରି ପାଠ ମଧ୍ୟରୁ ଭ୍ରଷ୍ଟ ଅଂଶକୁ ପରିତ୍ୟାଗ କରିଥାନ୍ତି ଏବଂ ଉଚିତ ସ୍ଥାନରେ ସଂଶୋଧନ ବି କରନ୍ତି । ଏହାକୁ କେହି କେହି ବୈଜ୍ଞାନିକ ନିର୍ବାଚନ ପ୍ରଣାଳୀ ବୋଲି କୁହନ୍ତି । ପାଶ୍ଚାତ୍ୟ ବିଦ୍ୱାନ୍‌ମାନେ ପ୍ରାୟ ଏହି ପନ୍ଥାକୁ ଅନୁସରଣ କରିଥାନ୍ତି ଏହା ଦୁଇଭାଗରେ ବିଭକ୍ତ । ପ୍ରଥମ ଭାଗର ଆଲୋଚକ ଅର୍ଥପରୀକ୍ଷଣ ଦ୍ୱାରା ବିଭିନ୍ନ ପ୍ରତି ଲିପିରେ ଥିବା ପାଠର ଅର୍ଥ କରି ଅନେକ ସମୟରେ ଟାଣି .ଓଟାରି ଅର୍ଥ ବାହାର କରନ୍ତି । ଅନେକ ସମୟରେ ଏ ଅର୍ଥ ସନ୍ଦର୍ଭ ବହିର୍ଭୂତ ଅର୍ଥ ମଧ୍ୟ ପ୍ରଦାନ କରେ । ଅନୁବାଦ ଦ୍ୱାରା ଏହା ସମ୍ଭବ ହୁଏ । କିନ୍ତୁ ଏ ପ୍ରଣାଳୀ ପ୍ରାୟ ଅପୂର୍ଣ୍ଣ ରୁହେ । କାରଣ ଏହାଦ୍ୱାରା ଆମେ ଗ୍ରନ୍ଥରେ ସନ୍ଦେହାସ୍ପଦପାଠର ଅନୁପ୍ରବେଶ କରାଇ ପାଠକୁ କ୍ଲିଷ୍ଟ କରିଦେଇଥାଉ । ବେଦର ଟୀକା କଲାବେଳେ ଏହି ପରି ପ୍ରଚେଷ୍ଟା ପ୍ରାୟ ଦେଖିବାକୁ ମିଳେ । ବୈଦେ-ହୀଶ ବିଳାସ ପ୍ରଭୃତି ଗ୍ରନ୍ଥର ପାଠ ନିର୍ଣ୍ଣୟ କଲାବେଳେ ମଧ୍ୟ ବେଳେ ବେଳେ ଏପରି ପ୍ରଚେଷ୍ଟା ଦୃଷ୍ଟି ଗୋଚର ହୁଏ । ଏ ପ୍ରକାର ପାଠ ନିର୍ଣ୍ଣୟ ଗ୍ରନ୍ଥ ଓ ଲେଖକ ଦୃଷ୍ଟିରୁ ଅତ୍ୟନ୍ତ ହାନିକର । କାରଣ ଏପରି ବହୁ ଅର୍ଥ ଲେଖକଙ୍କ କଳ୍ପନାରେ ବି ପ୍ରବେଶ କରିବାର ସମ୍ଭାବନା ନାହିଁ ଓ ଏହା ଲେଖକ ଦ୍ୱାରା ସ୍ୱୀକୃତ ବି ହୁଏ ନାହିଁ । ପାଠାଲୋଚନା କ୍ଷେତ୍ରରେ ଏ କଥା ପ୍ରାୟ

ସ୍ୱୀକାର କରାଯାଏ ଯେ ମହାନରୁ ମହାନ ଲେଖକଙ୍କ ଲେଖାରେ ଭୁଲ ରହିବା ବିଚିତ୍ର ନୁହେଁ । ତେଣୁ ଏପରି ଭୁଲବା ପ୍ରମାଦକୁ ରଖିବା ଅପେକ୍ଷା ଅର୍ଥ ଦୃଷ୍ଟିରୁ ବା ବ୍ୟାକରଣ ପ୍ରୟୋଗ ଦୃଷ୍ଟିରୁ ଏହାକୁ ବାହାର କରିଦେବା ଲେଖକଙ୍କ ପାଇଁ ହାନିକାରକ । ଅନୁଦର-ବାଦୀ ପାଠାଲୋଚକ ପାଠ - ପରିଷ୍କରଣ ଅପେକ୍ଷା ପାଠର ବ୍ୟାଖ୍ୟା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାନ୍ତି ।

ଉଦାରବାଦୀ ଆଲୋଚକ ବ୍ୟାଖ୍ୟା ଅପେକ୍ଷା ସଂଶୋଧନ ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରିଥାନ୍ତି ଏମାନଙ୍କ ମତରେ " Correction should precede interpretation " କିନ୍ତୁ ଏହାବି ଅର୍ଦ୍ଧସତ୍ୟ । ଯଦି କୌଣସି ପାଠ ବିଶେଷର ବ୍ୟାଖ୍ୟା ଦ୍ୱାରା ଅପେକ୍ଷିତ ଅର୍ଥ ବୋଧରେ ବାଧା ସୃଷ୍ଟି ହୁଏ ଏବଂ ଏହାକୁ ସଂଶୋଧନ ବି କରି ଦିଆଯାଏ, ତା'ହେଲେ ଏ ପ୍ରକାର ସଂଶୋଧନ ମଧ୍ୟ ଅସଫଳ ହୋଇଥାଏ ପାଠର ଯେତେ ସମ୍ଭବ ଅଳ୍ପ ପରିବର୍ତ୍ତନ କରିବା ପ୍ରକୃତ ପାଠ ନିର୍ଣ୍ଣୟର ମୂଳ ଉଦ୍ଦେଶ୍ୟ ହେବା ଆବଶ୍ୟକ । ସେଥିପାଇଁ ହସ୍ତଲିଖିତ ପାଣ୍ଡୁଲିପିକୁ ଆଧାର କରି ସୁଗମ ଅର୍ଥ ଅନୁଧ୍ୟାନ କରି ବିଭିନ୍ନ ସମୟରେ ବିଭିନ୍ନ ପୋଥିରୁ ପାଠ ଗ୍ରହଣ କରିବା ବାଞ୍ଛନୀୟ ।

ସେଥିପାଇଁ ରଚିତ ପ୍ରଣାଳୀ ହେଲା ସମସ୍ତ ଉପଲବ୍ଧ ହସ୍ତଲିଖିତ ପ୍ରତିଲିପିର ବିଭିନ୍ନ ପାଠାନ୍ତରକୁ ବୈଜ୍ଞାନିକ ବ୍ୟାଖ୍ୟା କରି ଯେଉଁଠି ପାଠ ଅତ୍ୟନ୍ତ ଭ୍ରଷ୍ଟ, ସେ ସ୍ଥାନରେ ସବୁ ପ୍ରତି ଲିପିରେ ଥିବା ଯଥାର୍ଥ ପାଠକୁ ଗ୍ରହଣ କରିବା ଅବଶ୍ୟକ । ସେତେବେଳେ ଆହୁରି ଅଧିକ ପୋଥି ସଂଗ୍ରହ କରି ଏହି ପାଠକୁ ପରୀକ୍ଷା କଲେ ପ୍ରାୟ ପ୍ରକୃତ ପାଠ ଆସିଯାଏ । ଏହା ସମୟ ସାପେକ୍ଷ ଓ ଶ୍ରମ ସାପେକ୍ଷ ହେଲେ ବି ପ୍ରକୃତ ପାଠ ବର୍ଣ୍ଣନାରେ ଏହା ହିଁ ପ୍ରକୃତ ପନ୍ଥା ।

ଉପରେ ପ୍ରଦତ୍ତ ପାଠାଲୋଚନା ତତ୍ତ୍ୱକୁ ଲାବଣ୍ୟବତୀର ଗୋଟିଏ ଛାନ୍ଦ ଅର୍ଥାତ୍ ପ୍ରଥମ ଛାନ୍ଦକୁ ନେଇ ପରୀକ୍ଷା କରଯାଇପାରେ । ଲାବଣ୍ୟବତୀର ତିନୋଟି ପାଠ ପ୍ରଚଳିତ । ଏତିନୋଟି ପାଠକୁ ତିନୋଟି ପୋଥି ଭବେ କଳ୍ପନା କରି କାର୍ଯ୍ୟ ଆରମ୍ଭ କରଯାଇପାରେ ।

୧ମ- ଆର୍ତ୍ତବଲ୍ଲଭ ପାଠ - କ

୨ୟ- ନୀଳକଣ୍ଠ ପାଠ - ଖ

୩ୟ- ବଜାର ପାଠ - ଗ

ଏ ତିନୋଟି ପାଠକୁ ତୁଳନା କଲେ ଏଥିରେ ୧୮ଟି ପଦ ସବୁଥିରେ ସମାନ । ସେ ସବୁ ପଦ ହେଲା ୧, ୬, ୧୨, ୧୩, ୧୪, ୧୮' ୨୦, ୨୬, ୨୭, ୩୯, ୪୭, ୪୯, ୬୧, ୬୪, ୬୭, ୬୮, ୭୦' ୭୧ ( ପଣ୍ଡିତ ନୀଳକଣ୍ଠ ଓ ବଜାର ପାଠ ଅନୁଯାୟୀ )

ଏହି ଛାନ୍ଦରେ ପଣ୍ଡିତ ନୀଳକଣ୍ଠ ଓ ବଜାର ପାଠରେ ୭୨ ପଦ ଥିବା ବେଳେ ଆର୍ତ୍ତବଲ୍ଲଭ ୭୧ଟି ପଦ ଗ୍ରହଣ କରିଛନ୍ତି । ଆର୍ତ୍ତବଲ୍ଲଭ ଗ୍ରହଣ କରିନଥିବା ପଦଟି ହେଲା—

" ଦୋଷ ଥିଲେ ରସ ବର୍ଣ୍ଣ କରିବେ ଆଦର,
ଏଣୁ ଅତିଶୟ ସଂଶୟକୁ କରି ଦୂର ହେଁ । "
( ପଦ୧୨ )

ଏ ପଦଟି ଦୁଇଟି ପୋଥିରେ ଥିବା ହେତୁ ଏହାକୁ ଗ୍ରହଣ କରି ନେବା ଆବଶ୍ୟକ । ପ୍ରସଙ୍ଗ ଦୃଷ୍ଟିରୁ ମଧ୍ୟ ଏଥିରେ କୌଣସି ବାଧା ସୃଷ୍ଟି ହୁଏନାହିଁ

ତିନୋଟି ଯାକ ପାଠରୁ ଜଣାଯାଏଯେ ପଦ ଶେଷରେ ବ୍ୟବହୃତ ଯେ ଓ ହେ କୁ ଲିପିକାର ମାନେ ଯଥେଚ୍ଛା ବ୍ୟବହାର କରିଛନ୍ତି । କେଉଁ

ପଦରେ କିଏ ଛାଡ଼ି ଯାଇଛି ତା'ର ସ୍ଥିରତା ନାହିଁ । ଏହି 'ଯେ' ବା 'ହେ' ପଦର ଏକ ଅବିଭାଜ୍ୟ ଅଂଶ ହେତୁ, ଏହାକୁ ପ୍ରତି ପଦରେ ଗ୍ରହଣ କରିନେବା ଉଚିତ ମନେ ହୁଏ ।

୭୨ ପଦରୁ ୧୮ଟି ପଦ ସମାନ ହୋଇଥିବା ହେତୁ ଏବଂ ଅନ୍ୟ ଛାନ୍ଦରେ ଥିବା ଏପରି ପଦସବୁକୁ ବିଚାରକୁ ନେଇ କବି ଉପେନ୍ଦ୍ରଙ୍କ ସ୍ୱକୀୟ ଶୈଳୀ ଉପରେ ଏକ ସ୍ପଷ୍ଟ ଧାରଣା କରି ପ୍ରୟୋଗ ଜନିତ ବୈଶିଷ୍ଟ୍ୟ ସବୁକୁ ସଂପାଦକ ନିଜର ଭବିଷ୍ୟତ ବିଚାର ପାଇଁ ନୋଟ କରିନେବା ଆବଶ୍ୟକ । ଏହାହିଁ ଗ୍ରନ୍ଥର ଆଭ୍ୟନ୍ତରୀଣ ପ୍ରମାଣ । ଏ ସବୁର ଏକ ଖସଡ଼ା ପ୍ରସ୍ତୁତ କରିନେବା ପରେ ଦେଖାଯିବ ଯେ ଅନେକ ପଦ ଅର୍ଥାତ କ, ଖ ଓ ଗ ମଧ୍ୟରୁ କେତେବେଳେ ଖ ଓ ଗ ରେ ଅଛି ଯେ କେତେବେଳେ କ ଓ ଗ ରେ ଅଛି । ଏହା ବ୍ୟତୀତ କେହି କାହାରି ସହିତ ନ ମିଳିବା ପାଠ ମଧ୍ୟ ମିଳିବ । ପ୍ରଥମେ ଶେଷ ପର୍ଯ୍ୟାୟରେ ପଦ ସବୁକୁ ଅଲଗା କରିନେଇ ଦୁଇ ପୋଥିରେ ମିଳୁଥିବା ସାମ୍ୟ ରଖୁଥିବା ପଦ ସବୁକୁ ବିଚାର କରିନେବା ଆବଶ୍ୟକ । ଏପରି ଗୋଟି ପଦହେଲା—

" ତହିଁ ରଖି କହିଲେ ଲଙ୍ଘିବୁ ଯେତେ ଦ୍ୱାର
କିଛି କାଳେ ପ୍ରାଣ-ହତ ହୋଇବ ତୋହର ଯେ " ।
। ୨୪ ।

ଏଥିରେ ଖ ଓ ଗ 'କିଛି କାଳେ' ଗ୍ରହଣ କରିଥିବା ବେଳେ 'କ' ରେ 'କିଛୁକାଳେ' ରଖା-ଯାଇଛି । କାଳକ୍ରମ ଅନୁଯାୟୀ ପାଣ୍ଡୁଲିପିକୁ ସଜେଇ ଦେଲେ ଏବଂ ଅନ୍ୟ ପଦରେ ଥିବା 'କିଛି' କୁ ବିଚାରକୁ ନେଲେ ଏହାର ସମାଧାନ ଆସିଥାଏ । ପ୍ରାୟ ପ୍ରାଚୀନ ପୋଥିର 'କିଛି' ସ୍ଥାନରେ 'କିଛୁ' ଶବ୍ଦ ମିଳେ । ତେଣୁ ଏଠାରେ ପ୍ରାଚୀନତାକୁ ଆଧାର କରି 'କିଛୁ' ଗୃହୀତ ହୋଇଥାଏ । ଯଦି ଏହା ପୋଥିର ପ୍ରାଚୀନତା ଉପରେ ଅସମାଧିତ ରହିଯାଏ । ତା ହେଲେ ସମ କାଳୀନ ଅନ୍ୟ ପୋଥିର ପାଠରୁ ସାହାଯ୍ୟ ନିଆଯାଇ ପାରେ । ଯଦି ଦେଖାଯାଏ ଏହା ଏକ ପ୍ରାଚୀନ ପ୍ରୟୋଗ ଏବଂ ଏଥିରେ ଅର୍ଥ ଗ୍ରହଣରେ କୌଣସି ବାଧା ନାହିଁ ତାହାହେଲେ ଏହାକୁ ଗ୍ରହଣ କରିବାରେ ବାଧା ନାହିଁ ।

ଆଉ ଗୋଟିଏ ପଦ ବିଚାରକୁ ନିଆଯାଇପାରେ

କ – ଏବେ ଚିତ୍ତ ରୁଚିତ ରଚିତ ସୁମଧୁର
ଶ୍ରୁତି ବଦନରେ ପାନ କର ବୁଧ ନରହେ ( ୧୨ ପଦ )

ଖ – ଏବେ ଚିତ୍ତ ରଞ୍ଜନ ଚରିତ ସୁମଧୁର
ଶ୍ରୁତି ବଦନରେ ପାନ କର ବୁଦ୍ଧ ନର ହେ (୧୩ପଦ)

ଗ – ଏ ବିଚିତ୍ର ଚରିତ ରଚିତ ସୁମଧୁର
ଶ୍ରୁତି ବଦନରେ ପାନ କର ବୁଧ ନର ହେ ।

କ ଓ ଖ ପାଠକୁ ତୁଳନା କରଯାଉ । ଏଥିରେ ପ୍ରଥମ ପାଦର ଶେଷାଂଶରେ ସାମ୍ୟ ଅଛି ରଚିତ ସୁମଧୁର । ଖ ଓ ଗ ପୋଥିରେ ମଧ୍ୟ ରଚିତ ଶବ୍ଦରେ ସାମ୍ୟ ପରିଦୃଷ୍ଟ ହୁଏ । ତେଣୁ ଚରିତ ରଚିତ ସୁମଧୁର ପାଠ ଗ୍ରହଣ କଲେ ପରେ ଦେଖାଯିବ ବାକିଥିବା ଏ ବିଚିତ୍ର ( ଗ ପାଠ ) ପାଠକୁ କୌଣସି ଲିପିକାର 'ବି' କୁ 'ବେ' ପାଠ କରିବା ଫଳରେ 'ଏବେ' ଶବ୍ଦର ସୃଷ୍ଟି ହେଲା । ବି କୁ ବେ କରିଦେବା ଫଳରେ ଚିତ୍ରର କୌଣସି ଅର୍ଥ ରହିଲାନାହିଁ ଏବଂ ଲିପିକାର ଅର୍ଥରେ ସଂଗତି ଆଣିବାପାଇଁ ଚିତ୍ରକୁ ଚିତ୍ତ କଲା । 'ଚିତ୍ତ' ଶବ୍ଦ ପରେ ରୁଚିତ ବା ରଞ୍ଜନ ଶବ୍ଦ ସୃଷ୍ଟି ହେଲା । ଏଇଥିରୁ ପୋଥିର ପରିବାର ନିର୍ଣ୍ଣୟ କରଯାଇ ପାରେ । ଗ ପୋଥି ଏକ ପରିବାର ର ଏବଂ କ ଓ ଖ ପୋଥି ଅନ୍ୟଏକ

ପରିବାରର, ଅନ୍ୟ ପଦର ତୁଳନାରୁ ଏହି ପରିବାର ନିର୍ଣ୍ଣୟ କାର୍ଯ୍ୟ ସମାପନ କଲାପରେ ଦେଖାଯିବ ଯେ 'ଗ' ପୋଥି ହିଁ ପ୍ରକୃତ ପାଠ ଦେବାପାଇଁ ସମର୍ଥ ।

ସବୁବେଳେ ଗୋଟିଏ କଥା ମନେ ରଖିବା ଉଚିତ ଯେ ସଂପାଦକ ନିଜ ମନରୁ ନିଜ ପାଣ୍ଡିତ୍ୟ ପ୍ରୟୋଗ କରି କୌଣସି ପାଠ ଗ୍ରହଣ କରିବା ଅନୁଚିତ ପ୍ରତ୍ୟେକ ପାଠ ପୋଥି ପାଠ ଉପରେ ଆଧାରିତ ହେବା ଆବଶ୍ୟକ ।

ଉପେନ୍ଦ୍ର ଭଞ୍ଜ ଏ ଦେଶର ଜଣେ ଅସାଧାରଣ କବି । ତାଙ୍କ ଗ୍ରନ୍ଥ ସବୁର ଶୁଦ୍ଧପାଠ ନିର୍ଣ୍ଣୟ ଉପରେ ଏ ଦେଶର ମଧ୍ୟକାଳୀନ ସଂସ୍କୃତି, ପରମ୍ପରା, ସାହିତ୍ୟିକର ରୁଚି, ପାଣ୍ଡିତ୍ୟ ନିର୍ଭର କରେ । ଗୋଟିଏ ଗୋଟିଏ ଶବ୍ଦର ସେ ସମୟର ଇତିହାସ ଜାଣିବାରେ ସୁବିଧା ହୁଏ । ସେଥିପାଇଁ ଯେଉଁମାନେ ଉପେନ୍ଦ୍ରଙ୍କ କାବ୍ୟର ଶୁଦ୍ଧ ପାଠ ନିର୍ଣ୍ଣୟ କାର୍ଯ୍ୟରେ ହାତ ଦେବେ, ସେମାନେ ବିଶେଷ ସାବଧାନତା ସହ ଏ କାର୍ଯ୍ୟ ସଂପାଦନ କଲେ ଉପେନ୍ଦ୍ରଙ୍କ କାବ୍ୟ ପ୍ରତିଭାର ପ୍ରକୃତ ମହତ୍ତ୍ୱ ପରିସ୍ଫୁଟ ହେବ । ଉପେନ୍ଦ୍ରଙ୍କ ସରଳ ଧ୍ୱନି, ସୁମଧୁର ପଦ, ଓ ମୃଦୁଗୀତକୁ ନିଜ ପାଣ୍ଡିତ୍ୟ ବଳରେ ଅଯଥା କ୍ଲିଷ୍ଟ କଲେ କବିଙ୍କ ମହତ୍ ଉଦ୍ଦେଶ୍ୟ କାର୍ଯ୍ୟକାରୀ ହେବନାହିଁ । ତେଣୁ ଆନୁରୋଧ ଉପେନ୍ଦ୍ରଙ୍କ ବିଭିନ୍ନ ଗ୍ରନ୍ଥର ବହୁ ପୋଥି ସଂଗ୍ରହ କରି କାଳ ଅନୁଯାୟୀ ପୋଥି ସବୁକୁ ସଜାଇ ଏହି କାର୍ଯ୍ୟ ଆରମ୍ଭ କରିବା ଆବଶ୍ୟକ । ପୋଥି ସଂପାଦନା ଆରମ୍ଭ କରିବା ପୂର୍ବରୁ ପୋଥି ସଂଗ୍ରହ ଏକ ଗୁରୁତ୍ୱ ପୂର୍ଣ୍ଣ କାର୍ଯ୍ୟ ଏହାକୁ ସାବଧାନତା ସହ ନ କଲେ ବହୁ ଅସୁବିଧା ସୃଷ୍ଟି ହେବାର ସମ୍ଭାବନା ଅଛି । ସୁଧୀ ସଂପାଦକ ବୃନ୍ଦ ଏଥିପ୍ରତି ଦୃଷ୍ଟି ଦେବେ ବୋଲି ଆଶା ।

*　　*　　*　　*　　*

୧୯୮୯ ମସିହା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗଦ୍ୱାରା ଅନୁଷ୍ଠିତ ଭଞ୍ଜସାହିତ୍ୟ ସମୀକ୍ଷା : ସୀମା ଓ ସମ୍ଭାବନା ପାଠଚକ୍ରରେ ପଠିତ ଓ ଆଲୋଚିତ ।



# ଉପେନ୍ଦ୍ରଙ୍କ ଦୃଷ୍ଟିରେ କାବ୍ୟ :–

* ଡଃ ଲକ୍ଷ୍ମୀଧର ଦାସ
ଅଧ୍ୟାପକ, ଓଡ଼ିଆ ଭାଷା ସାହିତ୍ୟ
ଖଲିକୋଟ ମହାବିଦ୍ୟାଳୟ, ବ୍ରହ୍ମପୁର-୧



ଅର୍ଥପରିବର୍ତ୍ତନ ଧାରରେ କବି ଶବ୍ଦପରି କାବ୍ୟ ଶବ୍ଦର ଅର୍ଥ ସଂକୋଚନ ଘଟିଛି । କବିଶବ୍ଦ ବିଶ୍ୱ-ସ୍ରଷ୍ଟାଙ୍କୁ ବୁଝାଉଥିଲା ବେଳେ କାବ୍ୟଶବ୍ଦର ଅର୍ଥଥିଲା-ସ୍ରଷ୍ଟାଙ୍କ ମୁଖନିଃସୃତ ବାଣୀ, ବାଙ୍‌ମୟ । ପୁରାଣ ଯୁଗରେ ରାମାୟଣ ଓ ମହାଭାରତ କାବ୍ୟରୂପେ ବିବେଚିତ ହେଲା । ସମୟର ଅଗ୍ରଗତିରେ କାବ୍ୟ କେବଳ ରାମାୟଣ ତୁଲ୍ୟ ଚିତ୍ତଚମତ୍କାରୀ ଲୋକୋତ୍ତର ସୃଷ୍ଟିକୁ ବୁଝାଇବାରୁ ମହାଭାରତ ଇତିହାସ ବା ଉପା-ଖ୍ୟସଂହିତାର ଆଖ୍ୟା ଲାଭ କଲା । ସେହିପରି ବାଙ୍‌ମୟ ଶାସ୍ତ୍ର ଓ କାବ୍ୟ ଉଭୟକୁ ବୁଝାଇଲା । କାବ୍ୟ ଅର୍ଥରେ ସାହିତ୍ୟ ଓ ପ୍ରବନ୍ଧ ଶବ୍ଦର ପ୍ରୟୋଗ କରାଗଲା । ଭାମହଙ୍କଠାରୁ ପଣ୍ଡିତରାଜ ଜଗନ୍ନାଥଙ୍କ ପର୍ଯ୍ୟନ୍ତ ଅଳଙ୍କାରିକମାନେ କାବ୍ୟର ସଂଜ୍ଞା, ସ୍ୱରୂପ ଓ ଶ୍ରେଣୀଭେଦ ଉପରେ ବିଭିନ୍ନ ଦୃଷ୍ଟିରୁ ଆଲୋଚନା କଲେ । କ୍ରମେ କାବ୍ୟସାହିତ୍ୟ, ପ୍ରବନ୍ଧ ତଥା ଗଦ୍ୟ, ପଦ୍ୟ, ନାଟକ, କଥା, ଆଖ୍ୟାୟିକାକୁ ନ ବୁଝାଇ ପଦ୍ୟ ଲିଖିତ ଏକ ସ୍ୱତନ୍ତ୍ର ରଚନାକୁ ବୁଝାଇଲା ।

ପ୍ରାକୃତ ଅପଭ୍ରଂଶ ସାହିତ୍ୟର ସୃଷ୍ଟି, ବିଶେଷତଃ ଆଧୁନିକ ଭାରତୀୟ ଭାଷାସାହିତ୍ୟର ଅଭ୍ୟୁଦୟ କାବ୍ୟର ଅର୍ଥପରିବର୍ତ୍ତନ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ କାଳ । ପ୍ରାଦେଶିକ ଭାଷାର କବିମାନେ ପଦ୍ୟକୁ ମୁଖ୍ୟ ମାଧ୍ୟମରୂପେ ଗ୍ରହଣକରି ପୁରାଣ, କାବ୍ୟ ଓ ଗୀତିକାମାନ ରଚନା କଲେ । ଭାରତର ଅନ୍ୟ ପ୍ରାନ୍ତୀୟ କବିମାନଙ୍କ ପରି ଉତ୍କଳୀୟ କବିମାନେ ପ୍ରାକୃତ ଓ ଅପଭ୍ରଂଶ ସାହିତ୍ୟରୁ କେତେକାଂଶରେ ପ୍ରେରଣା ପାଇଥିଲେବି ସଂସ୍କୃତ ଅଳଙ୍କାର ଶାସ୍ତ୍ର ଓ ଷଟ୍‌କାବ୍ୟ ଥିଲା ସେମାନଙ୍କର ମୁଖ୍ୟ ଆଦର୍ଶ । ଅଧିକାଂଶ ମଧ୍ୟଯୁଗୀୟ ଓଡ଼ିଆ କବି କାବ୍ୟ ସହିତ କୋଇଲି, ଚଉତିଶା, ଚଉପଦୀ, ପୋଇ, ବୋଲି, ଭଜନ, ଜଣାଣ, ଗୀତ, ଗୀତିକା ଆଦି ଗୀତିକବିତା ରଚନା କରିଥିଲେ । ଅଥଚ ସେମାନେ କାବ୍ୟର ପର୍ଯ୍ୟାୟବାଚୀ ଶବ୍ଦରୂପେ ସଂସ୍କୃତ ଅଳଙ୍କାର ଶାସ୍ତ୍ର-ସମର୍ଥିତ କାବ୍ୟ, ସାହିତ୍ୟ, ପ୍ରବନ୍ଧ, ଦୃଷ୍ଟି କବିଦ୍ୱ ଶବ୍ଦ ସହିତ ସମାର୍ଥରେ ଗୀତ, ଗୀତକ, ଛାନ୍ଦ, ଛାନ୍ଦଗୀତ, ଚରିତ, ରସ ପ୍ରଭୃତି ଶବ୍ଦର ପ୍ରୟୋଗ କରୁଥିଲେ । ଆଲୋଚ୍ୟକବି ଉପେନ୍ଦ୍ରଙ୍କ ରଚନାରେ ଏସବୁ ଶବ୍ଦର ପ୍ରୟୋଗ ଏକକ ଭାବେ ବା ସମ୍ମିଳିତଭାବେ ପରିଦୃଷ୍ଟ ।

ପ୍ରବନ୍ଧ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ପ୍ରକୃଷ୍ଟ ବନ୍ଧନ ହେଲେବି ମହାଭାରତ ରାମାୟଣ ମହାକାବ୍ୟ ଓ ନାଟକ ପ୍ରଭୃତି ସଂସ୍କୃତ ବାଙ୍‌ମୟରେ ପ୍ରବନ୍ଧ ରୂପେ ସୁପରିଚିତ । ତେଲୁଗୁ ଓ ହିନ୍ଦୀ ସାହିତ୍ୟପରି ପାଣ୍ଡିତ୍ୟପୂର୍ଣ୍ଣ ଶୈଳୀରେ ଲିଖିତ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ପ୍ରବନ୍ଧ ରୂପେ ଅଭିହିତ । ଉପେନ୍ଦ୍ର କାବ୍ୟ ଅର୍ଥରେ ଏହି ଶବ୍ଦର ପ୍ରୟୋଗ ପ୍ରଥମେ "ପ୍ରେମସୁଧା-ନିଧି" ରେ କରିଛନ୍ତି । ଶବ୍ଦ ଓ ଅର୍ଥର ପ୍ରତିସ୍ପର୍ଦ୍ଧୀ ଭାବ ବା ସହଭାବ ସାହିତ୍ୟ । କୁନ୍ତକ ଭାମହଙ୍କଉକ୍ତ " ଶବ୍ଦାର୍ଥୌ ସହିତ କାବ୍ୟମ୍ " ର ଏକ ଅଭିନବ

ବ୍ୟାଖ୍ୟାକରି ଯାଇଛନ୍ତି । ଭଞ୍ଜଙ୍କ ସାହିତ୍ୟ ଶବ୍ଦର ପ୍ରୟୋଗ ମଧ୍ୟରେ ଏହିଭଳି ଅଭିବ୍ୟଞ୍ଜିତ ।

ଛାନ୍ଦଶବ୍ଦର ବ୍ୟୁତ୍ପତ୍ତି ଓ ପ୍ରୟୋଗ ଦୃଷ୍ଟିରୁ ବିଚାର କଲେ ଏହା ସ୍ଥଳତଃ ସୁଲଳିତ ଆକର୍ଷଣୀୟ ଆବରଣ ମଧ୍ୟରେ ଲିଖିତ ପଦ୍ୟରଚନାକୁ ବୁଝାଏ । ଏକକ ଭାବେ କାବ୍ୟର ଅଂଶ ବିଶେଷ ତଥା ସମଗ୍ର କାବ୍ୟକୁ ଛାନ୍ଦ ଛାନ୍ଦ-ଅଣ ମଧ୍ୟ ବୁଝାଏ । ଗୈ ଧାତୁରୁ " କ୍ତ " ପ୍ରତ୍ୟୟ ଯୋଗରେ ନିଷ୍ପନ୍ନ ଗୀତଶବ୍ଦ ପଦ୍ୟ ଅର୍ଥରେ ସୁପ୍ରଚଳିତ । ମଧ୍ୟଯୁଗୀୟ କବିମାନେ କାବ୍ୟର ସଂଗୀତ ଧର୍ମଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରୁଥିବାରୁ କାବ୍ୟର ପର୍ଯ୍ୟାୟବାଚୀ ଶବ୍ଦରୂପେ ଗୀତ ଶବ୍ଦ ପ୍ରଯୁକ୍ତ । ଉପେନ୍ଦ୍ର " କର୍ଣ୍ଣମନ ଲୋଭ " ଓ " ଶ୍ରୁତିମୁଖସ୍ୱାଦ ମଧୁର ଛାନ୍ଦ " ପ୍ରତି ମନଯୋଗୀ ଥିବା ତାଙ୍କର ବିଭିନ୍ନ ସ୍ୱୀକୃତିରୁ ଉଦ୍‌ଘୋଷିତ ଗୀତ ଶବ୍ଦ ସହିତ ସ୍ୱାର୍ଥରେ " କ " ପ୍ରତ୍ୟୟ ଯୋଗରୁ ଗୀତକ ଶବ୍ଦର ସୃଷ୍ଟି । କବି " କଳାକଉତୁକ " ରେ ଅନୁପ୍ରାସ ରକ୍ଷାପାଇଁ ଗୀତକ ଶବ୍ଦ ବ୍ୟବହାର କରିଛନ୍ତି । ଛାନ୍ଦ ଓ ଗୀତ ଶବ୍ଦର ସମବାୟରେ ଗଠିତ " ଛାନ୍ଦଗୀତ " ର କାବ୍ୟ ଅର୍ଥରେ ପ୍ରୟୋଗରୁ ସୂଚିତ ଯେ ଗାନଯୋଗ୍ୟ ବିଭିନ୍ନ ରାଗରାଗିଣୀରେ ଲିଖିତ ରଚନାହିଁ କାବ୍ୟ ପଦବାଚ୍ୟ । ପୁଣି ଛାନ୍ଦକାବ୍ୟ ବିଭିନ୍ନ ଛାନ୍ଦରେ ବିଭକ୍ତ କାବ୍ୟର ସୂଚନା ପ୍ରଦାନ କରେ । ଏହା ସର୍ଗବନ୍ଧ ସଂସ୍କୃତକାବ୍ୟ ବା ଆଶ୍ୱାସବନ୍ଧ ପ୍ରାକୃତ କାବ୍ୟର ଅନୁରୂପ । ଇତି ବୃତ୍ତାତ୍ମକ କାବ୍ୟ ପ୍ରାକୃତ ସାହିତ୍ୟରେ "ଚରିତକାବ୍ୟ" ନାମରେ ବିଦିତ । ( ୩ ) ବୋଧହୁଏ, ଉପେନ୍ଦ୍ର ପ୍ରାକୃତ କାବ୍ୟ ପରମ୍ପରାର ପ୍ରଭାବରେ ପୁରାଣାଶ୍ରୟୀ " ସୁଭଦ୍ରା ପରିଣୟ " ଓ " ବୈଦେହୀଶ ବିଳାସ " କୁ ସ୍ଥଳ ବିଶେଷରେ " ଚରିତ " ବୋଲି କହିଛନ୍ତି ।

କାବ୍ୟର ପର୍ଯ୍ୟାୟବାଚୀ ଶବ୍ଦରୂପେ ପ୍ରବନ୍ଧ, ସାହିତ୍ୟ, ରସ, ଛାନ୍ଦ, ଗୀତ, ଛାନ୍ଦକାବ୍ୟ, ଛାନ୍ଦଗୀତ ପ୍ରଭୃତି ଶବ୍ଦର ପ୍ରୟୋଗରୁ ଏହା ପ୍ରତିପନ୍ନ ଯେ ଭଞ୍ଜ ସଂସ୍କୃତ ଅଳଙ୍କାର ଶାସ୍ତ୍ର ବା ମହାକାବ୍ୟର ଶିଳ୍ପ କୌଶଳ ସାମଗ୍ରିକଭାବେ ଅନୁସରଣ କରିନାହାନ୍ତି । ସେ ପ୍ରାକୃତକାବ୍ୟ ପରମ୍ପରା ଓ ଯୁଗୀୟ ଆଦର୍ଶ ପ୍ରଭାବରେ ସ୍ୱସୃଷ୍ଟିକୁ ଛାନ୍ଦରେ ବିଭାଜନ ପୂର୍ବକ ରାଗ-ରାଗିଣୀଯୁକ୍ତ କରିଛନ୍ତି । ଶବ୍ଦର ବିଚିତ୍ର ବିଳାସ, ଅର୍ଥ-ଚମତ୍କାରିତା ଓ ରସସୃଷ୍ଟି ପ୍ରତି ଧ୍ୟାନ ନିବେଶ କରିଛନ୍ତି । ପରବର୍ତ୍ତୀ ଆଲୋଚନାରୁ ଏହା ଅଧିକ ସ୍ପଷ୍ଟହେବ ।

ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟର କାବ୍ୟାଦର୍ଶ ଓ ସ୍ୱରଚିତ ଅଳଙ୍କାର ଶାସ୍ତ୍ରର ବିଭିନ୍ନ ଉଦ୍ଧୃତିରୁ ପୂର୍ବବର୍ତ୍ତୀ ସଂସ୍କୃତ ପ୍ରାକୃତ କାବ୍ୟପରମ୍ପରା ପ୍ରତି ଆକର୍ଷଣ ସୂଚିତ ହୁଏ । ( ୪ ) ସେ ଓଡ଼ିଆକାବ୍ୟକୁ ସଂସ୍କୃତକାବ୍ୟ ସମୃଦ୍ଧ କରିବାର ସ୍ପର୍ଦ୍ଧିତ ଅଭୀପ୍ସାନେଇ ଲେଖନୀ ଚାଳନା କରିଥିଲେ । ଏଣୁ ଆଳଙ୍କାରିକମାନଙ୍କ ଦ୍ୱାରା ପ୍ରତିଷ୍ଠିତ ବିଶିଷ୍ଟ ଅଳଙ୍କାରବାଦ ପ୍ରତି ଭଞ୍ଜକବି ଆକର୍ଷିତ ହେବା ସ୍ୱାଭାବିକ । ସେ ତାଙ୍କ ସମସାମୟିକ ବୟୋଜ୍ୟେଷ୍ଠ କବି ଦୀନକୃଷ୍ଣ ବା ପରବର୍ତ୍ତୀକବି ତ୍ରିବିକ୍ରମଭଞ୍ଜ, ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା ଓ ପଦ୍ମନାଭ ଦେବଙ୍କ ଅନୁରୂପ କାବ୍ୟକୁ ଯଥାକ୍ରମେ " କନ୍ଦର୍ପ-କେଳି କୁଶଳାବାଳା " ରସକଲ୍ଲୋଳ ୭/୩୭-୪୦), " ବରବନିତା " ( କନକଲତା ୧/୧୦ ୧୨ ), " ନାଗରୀନାରୀ " ( ଲଳିତଲୋଚନା ୧ମ ଛାନ୍ଦ ) ବା " ବୃତ୍ତିବାମା " ( ଭଗବତୀ ୧/୬-୮ ) ଭାବେ ତର୍କଣା କରି ପ୍ରଖ୍ୟାତ କାବ୍ୟ ଲକ୍ଷଣ ସମୂହର ସୂଚନା ପ୍ରଦାନ କରିନାହାନ୍ତି । "ବୈଦେହୀଶ ବିଳାସ " ରେ କୁନ୍ତକଙ୍କ ପ୍ରବର୍ତ୍ତିତ ବିଚିତ୍ରମାର୍ଗ ପ୍ରତି ଆକର୍ଷଣ ସୂଚିତ । " ରସିକ ହାରବଳୀ " " ପ୍ରେମସୁଧାନିଧି " " ସୁଭଦ୍ରା ପରିଣୟ " "ଲାବଣ୍ୟବତୀ " ଏବଂ " ବୈଦେହୀଶ ବିଳାସ " ରେ ସ୍ଥଳ ବିଶେଷରେ ଅଳଙ୍କରଣ ଓ ରସସୃଷ୍ଟିର ଅପରିହାର୍ଯ୍ୟତା ମୁଖ୍ୟତଃ ଉଦ୍‌ଘୋଷିତ । କବି " କୋଟିବ୍ରହ୍ମାଣ୍ଡ-

ସୁନ୍ଦରୀ " କୁ ଦିବ୍ୟପ୍ରଟୁଷ୍ଟ, ଗୁଣବନ୍ତ ଓ ରସିକମାନସ ମୋହନକାରୀ " ସୁଜାତି ସୁମନା " ବୋଲି ଅଭିହିତ କରିଛନ୍ତି । କିନ୍ତୁ ଭଂଜୀୟ କାବ୍ୟାଦର୍ଶର ସୁସଂହତ ଓ ବ୍ୟଞ୍ଜନାତ୍ମକ ଅଭିବ୍ୟକ୍ତି ଘଟିଛି ଲାବଣ୍ୟବତୀର ନିମ୍ନୋକ୍ତ ପଂକ୍ତିଚୟରେ —

" ମୂର୍ତ୍ତିମନ୍ତ କରି ମୃଦୁଗୀତ ବିରଚଇ
ଏଣୁ କରିଥିବ ଅଳଙ୍କାରଯୁକ୍ତ ହୋଇ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ । (୧/୭-୮)

ଭାରତୀୟ କାବ୍ୟତତ୍ତ୍ୱ ଚିନ୍ତନ ପରମ୍ପରାରେ ଛଅଟି ବିଶିଷ୍ଟ ତତ୍ତ୍ୱ ଯଥା -ଅଳଙ୍କାର, ରସ, ରୀତି, ଗୁଣ, ଧ୍ୱନି ଓ ବକ୍ରୋକ୍ତି ସର୍ବାଧିକ ଦୃଷ୍ଟି ଆକର୍ଷଣ କରିଥାଆନ୍ତି । ଉପର୍ଯ୍ୟୁକ୍ତ ଉଦ୍ଧୃତିରେ ଉଲ୍ଲିଖିତ ଅଳଙ୍କାର ଶବ୍ଦ ଅଳଙ୍କାରବାଦ ଏବଂ ମୃଦୁଗୀତ ସରଳ ପାବଳୀଳ ବୈଦର୍ଭୀ ବା ଲାଟୀରୀତି ସମ୍ମତ ମାଧୁର୍ଯ୍ୟ ବା ପ୍ରସାଦ-ଗୁଣକୁ ପ୍ରତୀକିତ କରିଥାଏ । ପୁଣି ରସିକ ବା ଅର୍ଥୀଜନ ପ୍ରକରକୁ ଆନନ୍ଦ କରିବ ସୂଚନାରେ ରସ-ବାଦର, ଧ୍ୱନିଶବ୍ଦ ଦ୍ୱାରା ଧ୍ୱନିବାଦ ଏବଂ 'ପଦସରଳ, ର ଉଲ୍ଲେଖ ମଧ୍ୟରେ ବକ୍ରୋକ୍ତିବାଦର ସୁକୁମାର ମାର୍ଗ ଅଭିବ୍ୟଞ୍ଜିତ ।

ଉପେନ୍ଦ୍ର ଅଳଙ୍କାର ଶାସ୍ତ୍ର ସମ୍ମତ ସର୍ବ ଲକ୍ଷଣଯୁକ୍ତ କାବ୍ୟ ରଚନାରେ ମନୋନିବେଶ କରିଥିଲେ । ସେ ଲକ୍ଷ୍ମଣ ସହାୟ ରାମଚନ୍ଦ୍ରଙ୍କ ପଦକମଳକୁ ଚିନ୍ତାକରି ପାଠକ ଚିତ୍ତକୁ ମୋହିତ କରୁଥିବା କାବ୍ୟ ଲକ୍ଷଣଯୁକ୍ତ ସାହିତ୍ୟ ସୃଷ୍ଟି କରୁଛନ୍ତି ବୋଲି " କୋଟିବ୍ରହ୍ମାଣ୍ଡ-ସୁନ୍ଦରୀ " ରେ ଘୋଷଣା କରିଛନ୍ତି । ପୁଣି ସେହି କାବ୍ୟରେ କହିଛନ୍ତି - " ହୋଇବ ଅର୍ଥେ ସରସ, ନୋହିବ ଦୋଷ ଯେ " ( ୪/୪୮ ) ଏଥିରୁ ଅନୁମିତ ହୁଏ କବି ଦୋଷହୀନ ଗୁଣଯୁକ୍ତ ଅଳଂକୃତ୍ କାବ୍ୟ-ରଚନା ପ୍ରତି ଆଗ୍ରହୀ ଥିଲେ । ତାଙ୍କର ଅନ୍ୟ ପୌରାଣିକାବ୍ୟ "ବୈଦେହୀଶ ବିଳାସ" କୁ 'ବିଦୂଷଣ-ଗୀତ' ( ୨୧/୧ ), 'ଦୂଷଣ ବିବର୍ଜିତ ଗୀତ' (୨/୧) ବୋଲି ଅଭିହିତ କରିବା ଏହି ଅନୁମାନକୁ ସମର୍ଥନ କରିଥାଏ । ପୁନଶ୍ଚ ନିମ୍ନୋକ୍ତ ଉପମାରୁ ଏହି ଆଭିମୁଖ୍ୟ ସମର୍ଥିତ —

" ବିଶୁଦ୍ଧ କବି ହୋଇ ସେ ବନ କାବ୍ୟରୁ,
ବିଶୋଧିଲେ ଦୂଷଣକୁ ଗୁଣ ପ୍ରକରୁ । "
( ବୈ. ବି ୨୩/୪୮)

ଉପେନ୍ଦ୍ର ଥିଲେ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ଓଡ଼ିଆ ଅଳଙ୍କାର ଶାସ୍ତ୍ର ପ୍ରଣେତା । ସେ 'ରସପଞ୍ଚକ' ରେ 'ରସ ତରଙ୍ଗିଣୀ' 'ସାହିତ୍ୟ ଦର୍ପଣ', 'କାବ୍ୟପ୍ରକାଶ', 'ପିଙ୍ଗଳ', 'କାମଶାସ୍ତ୍ର' ଏବଂ 'ଚିତ୍ରକାବ୍ୟ ବନ୍ଧୋଦୟ' ରେ 'କବି କଳ୍ପଲତା', 'ସାହିତ୍ୟ ରତ୍ନାକର', 'ଛନ୍ଦ ମଞ୍ଜରୀ' ଗ୍ରନ୍ଥର ଅନୁସରଣ କରିଛନ୍ତି ବୋଲି ସ୍ୱୀକାର କରିଛନ୍ତି । କବି ସ୍ୱୀକୃତି ତାଙ୍କର କାବ୍ୟ ସମ୍ପର୍କୀୟ ଆଭିମୁଖ୍ୟ ଉପରେ କେତେକାଂଶରେ ଆଲୋକପାତ କରିଥାଏ । ଉକ୍ତ ଗ୍ରନ୍ଥ ଗୁଡ଼ିକ ମଧ୍ୟରୁ 'ପିଙ୍ଗଳ', 'ଛନ୍ଦ ମଞ୍ଜରୀ', 'ଛନ୍ଦ ରତ୍ନାକର' ପ୍ରାକୃତ ଛନ୍ଦ ବିଷୟକ ଗ୍ରନ୍ଥ । ଦେବେଶ୍ୱରଙ୍କ ରଚିତ କବି 'କଳ୍ପଲତା' କବି ଶିକ୍ଷାତ୍ମକ ଅଳଙ୍କାର ଗ୍ରନ୍ଥ । ଧର୍ମଶ୍ୱରୀଙ୍କ ସଂଗ୍ରହଗ୍ରନ୍ଥ 'ସାହିତ୍ୟ ରତ୍ନାକର' ରେ ଅଳଙ୍କାରର ଅପରିହାର୍ଯ୍ୟତା ପ୍ରତିପାଦିତ । ଭାନୁଦତ୍ତଙ୍କ 'ରସ ତରଙ୍ଗିଣୀ' ରେ ଶୃଙ୍ଗାର ରସର ବିସ୍ତୃତ ବିଶ୍ଳେଷଣ କରାଯାଇଛି । ମମ୍ମଟଙ୍କ 'କାବ୍ୟପ୍ରକାଶ' ଅଳଙ୍କାର ଶାସ୍ତ୍ରର ପରିସରକୁ ଆସୁଥିବା ପ୍ରାୟ ସମସ୍ତ ବିଷୟକୁ ସ୍ପର୍ଶ କରିବା ସଙ୍ଗେ ସଙ୍ଗେ ରସଧ୍ୱନିର ଗୁରୁତ୍ୱକୁ ସ୍ୱୀକାର କରିଛି । ବସ୍ତୁତଃ ମମ୍ମଟଙ୍କ ମତରେ ଅଦୋଷ, ସଗୁଣ, କ୍ୱଚିତ ସାଳଙ୍କାର ଶବ୍ଦାର୍ଥ ହିଁ କାବ୍ୟ । ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ-ଦର୍ପଣ' ରେ ଅଳଙ୍କାର ଶାସ୍ତ୍ର ବର୍ଣ୍ଣିତ ସମସ୍ତ ବିଷୟର ନ୍ୟୂନାଧିକ ଆଲୋଚନା କରାଯାଇ ରସକୁ ସର୍ବାଧିକ ମାନ୍ୟତା ପ୍ରଦାନ କରାଯାଇଛି ।

ଏତଦ୍‌ବ୍ୟତୀତ 'ଚିତ୍ରକାବ୍ୟ ବନ୍ଧୋଦୟ' ରେ ଉଲ୍ଲିଖିତ 'ଦେଖ ବିଦଗ୍‌ଧମଣ୍ଡନ ବିଚାର' ରୁ ସୂଚିତ ହୁଏ ଯେ ଉପେନ୍ଦ୍ର ଚିତ୍ରକାବ୍ୟ କୌଶଳ ଓ ଲକ୍ଷଣରେ ଭକ୍ତିମନ୍ତ ଧର୍ମଦାସସୂରୀଙ୍କ ବିଦଗ୍‌ଧ ମଣ୍ଡନ ସହିତ ସୁପରିଚିତ ଥିଲେ । ଏହି ଗ୍ରନ୍ଥଟି ବାଗ୍‌ବିନ୍ୟାସ ପ୍ରତିଷ୍ଠା ବା ଦରବାରୀ ସାହିତ୍ୟ ସୃଷ୍ଟିନିମିତ୍ତ ଅତ୍ୟନ୍ତ ମୂଲ୍ୟବାନ୍ ।

ଭଞ୍ଜ ଅନୁସରଣେ ୧୮ଟି ଉଲ୍ଲିଖିତ ଅଳଙ୍କାର ଗ୍ରନ୍ଥ ଗୁଡ଼ିକ ମଧ୍ୟରୁ 'କାବ୍ୟ ପ୍ରକାଶ' ଏକାଦଶ ଶତାବ୍ଦୀର ଶେଷ ଭାଗରେ ରଚିତ । ଅନ୍ୟ ଗ୍ରନ୍ଥଗୁଡ଼ିକ ଦ୍ୱାଦଶରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ ଲିଖିତ ଏବଂ ପରିବର୍ତ୍ତିତ ନାନ୍ଦନିକ ଆଭିମୁଖ୍ୟ ଏସବୁ ଗ୍ରନ୍ଥରେ ପ୍ରାୟଶଃ ବର୍ଣ୍ଣିତ । 'ସାହିତ୍ୟ ଦର୍ପଣ' ଏବଂ 'କାବ୍ୟ ପ୍ରକାଶ' ବ୍ୟତୀତ ଉଲ୍ଲିଖିତ ଅନ୍ୟ ଅଳଙ୍କାର ଶାସ୍ତ୍ରରେ କବିଶିକ୍ଷା, ଛନ୍ଦ ଓ ଶବ୍ଦ ପ୍ରୟୋଗ କୌଶଳ, ବାକ୍ ବୈଦଗ୍‌ଧ୍ୟ, ବର୍ଣ୍ଣନା ଚମତ୍କୃତି, ଅଳଙ୍କରଣ ଆଦି ଯୁଗରୁଚି ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରଯାଇଛି । ଉପେନ୍ଦ୍ର ସ୍ୱକୀୟ କାବ୍ୟରେ ଯୁଗରୁଚିର ରୂପାୟନ ଦିଗରେ ସଚେଷ୍ଟ ଥିବା ସଙ୍ଗେ ସଙ୍ଗେ ଓଡ଼ିଆ କବିଙ୍କୁ ସେ ସମ୍ବନ୍ଧରେ ସଚେତନ କରିବା ପାଇଁ ଅଳଙ୍କାର ଶାସ୍ତ୍ର ଓ ଅଭିଧାନ (ଗୀତାଭିଧାନ) ରଚନା କରି ଯାଇଛନ୍ତି ।

ଉପେନ୍ଦ୍ର ଭିନ୍ନ ଅନ୍ୟ କୌଣସି ଓଡ଼ିଆ କବି ସମସ୍ତ ପ୍ରତିଷ୍ଠିତ ଅଳଙ୍କାର ମତବାଦକୁ କାବ୍ୟ ଗର୍ଭିତ କରିପାରି ନାହିଁ । ସେ ଅଳଙ୍କାର ଶାସ୍ତ୍ର ଇତିହାସରେ ସର୍ବାଧିକ ଦୋଷଦର୍ଶୀ ଆଳଙ୍କାରିକ ଭାବେ ସ୍ୱୀକୃତ ମମ୍ମଟଙ୍କୁ ଅନୁସରଣ କରିଥିଲେବି ମାତ୍ର ସାତୋଟି କାବ୍ୟଦୋଷ ଉଲ୍ଲେଖ କରିଛନ୍ତି ଯଥା – ପୁନରୁକ୍ତି, ଅଶ୍ଳିଷ୍ଟ, ପର୍ଯାୟ ଅର୍ଥ ନ ଜାଣି ପ୍ରୟୋଗ, କର୍ଣ୍ଣ-କଟୁତା, ଗୁପ୍ତଦୋଷ, ଯତିଭଙ୍ଗ ଓ ବ୍ୟସ୍ତପଦ ( ରସମଞ୍ଜରୀ ୧/୧/୪୨ ) । ତାଙ୍କ ପ୍ରଦର୍ଶିତ ଏଗାରଟି କାବ୍ୟଗୁଣ ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ଦୋଷରୂପେ ଗୃହୀତ – ଦିବ୍ୟାଦିବ୍ୟଭଷା, ଅପ୍ରଚୁର ଶବ୍ଦ, ବିଲୋମ, ବ୍ୟସ୍ତାକ୍ଷର, ବର୍ଣ୍ଣନିୟମ ( ଆଦ୍ୟ, ମଧ୍ୟ ଓ ପ୍ରାନ୍ତ ) ଅନ୍ତର୍ଭୁକ୍ତ । (ରସମଞ୍ଜରୀ ୧/୨/୧) ଏହା ପରିବର୍ତ୍ତିତ ଯୁଗ ରୁଚିର ପ୍ରତିଫଳନ ମାତ୍ର । ଉପେନ୍ଦ୍ରଙ୍କ କାବ୍ୟମାନଙ୍କରେ ଏସବୁର ଭୂରିଭୂରି ପ୍ରୟୋଗ ଉପଲବ୍‌ଧ । ଉପେନ୍ଦ୍ର ଯୁଗରୁଚିର ସାର୍ଥକ ରୂପକାର । ଯୁଗ ଆଦର୍ଶରେ ପୂର୍ଣ୍ଣତା ସୃଷ୍ଟି କରିବା ତାଙ୍କର ଚରମ ସଫଳତା । ଏହାହିଁ ସମୀକ୍ଷକ ମାନଙ୍କ ଦୃଷ୍ଟିରେ କବିଙ୍କ ଦୁର୍ବଳତା ।

କବି ସଂସ୍କୃତ ମହାକାବ୍ୟ ଧାରାର ଅନୁସରଣରେ ଗୁରୁକାବ୍ୟ ରଚନା କରିବା ଦିଗରେ ପ୍ରୟାସୀ ଥିଲେ । ତାଙ୍କର ବିଶିଷ୍ଟ ରଚନା ଗୁଡ଼ିକରେ ଭାମହ, ଦଣ୍ଡୀ, ରୁଦ୍ରଟ କ୍ଷେମେନ୍ଦ୍ର, ହେମଚନ୍ଦ୍ର ପ୍ରଭୃତିଙ୍କ ପ୍ରଭାବ ବିଷୟ ବିନ୍ୟାସ ଓ ଅଙ୍ଗସଜ୍ଜା ମଧ୍ୟରେ ବିଦଗ୍‌ଧ ପାଠକ ଉପଲବ୍‌ଧି କରିଥାଏ । ସେ ପ୍ରାକୃତ କାବ୍ୟଧାରାକୁ କେତେକାଂଶରେ ଅନୁସରଣ କରିଛନ୍ତି । ଲଘୁକଥା ବସ୍ତୁକୁ ମହାକାବ୍ୟିକ ଗୌରବ ଦେବାର ପ୍ରଚେଷ୍ଟା, କାବ୍ୟାରମ୍ଭରେ ମଙ୍ଗଳାଚରଣ ଗ୍ରନ୍ଥ ରଚନାର ଲକ୍ଷ୍ୟ ଓ ଆତ୍ମଲଘୁତା ପ୍ରକାଶ, ସଜ୍ଜନସ୍ତୁତି, ଦୁର୍ଜନ ଅପବାଦ; କଥାମଧ୍ୟରେ ଆରାଧ୍ୟଦେବତାଙ୍କ ସ୍ତୁତି ଏବଂ ପ୍ରାର୍ଥନାର ବାରମ୍ବାର ସଂଯୋଜନା, ଆତ୍ମପରିଚୟ ପ୍ରଦାନ, ସମ୍ବାଦ ଶୈଳୀପରି କେତେକ କାବ୍ୟରୁଢ଼ି ଭାରତୀୟ କାବ୍ୟ କୌଶଳ ପରମ୍ପରାକୁ ପ୍ରାକୃତ-ଅପଭ୍ରଂଶ ସାହିତ୍ୟର ଉଲ୍ଲେଖଯୋଗ୍ୟ ଅବଦାନ । ୫) ଭଞ୍ଜୀୟ କାବ୍ୟରେ ଏସବୁର ଅନୁବର୍ତ୍ତନ ଘଟିଛି । ପ୍ରାକୃତ-ଅପଭ୍ରଂଶ ସାହିତ୍ୟର ବିକାଶ ବେଳକୁ ସଂସ୍କୃତ ତଥା ପ୍ରାକୃତ ସାହିତ୍ୟରେ ଉକ୍ତି ବୈଚିତ୍ର୍ୟ ପ୍ରାଧାନ୍ୟ ଲାଭ-କରିଥିଲା । ତେଣୁ ରାଜଶେଖର କହିଥିଲେ-ଭାଷା ଯାହା ହେଉନା କାହିଁକି ଉକ୍ତି ବିଶେଷ ହିଁ କାବ୍ୟ -। ( ଉତ୍ତିବି ସେସୋହିଁ କବ୍‌ବଂ ଭଷା ଯା ହୋଇ ତା ହୋଇ କପ୍ପୁର ମଞ୍ଜରୀ ) ଉପେନ୍ଦ୍ର ଏ ଦିଗରେ ସଚେତନ ଥିଲେ । ( ୬ )

ଭଞ୍ଜ କବି 'ବୈଦେହୀଶ ବିଳାସ' ପ୍ରାରମ୍ଭରେ ସଂସ୍କୃତ କବି ବାଲ୍ମୀକି, ବ୍ୟାସ, କାଳିଦାସ ଓ ଭୋଜଙ୍କ କବିତ୍ୱକୁ ସ୍ମରଣ କରିଛନ୍ତି । ସେ 'ରସ ପଞ୍ଚକ' ରେ ( ଅନୁକ୍ରମଣି ୨୧ ) କାଳିଦାସ ବାଣୀ, (ଚିତ୍ରକାବ୍ୟ–ବନ୍ଧୋଦୟ' ରେ ମାଘକାବ୍ୟ (୧/୬) ଓ 'କୋଟି–ବ୍ରହ୍ମାଣ୍ଡ ସୁନ୍ଦରୀ' ରେ 'ନୈଷଧ' (୧୧/୩୨) ର ଉଲ୍ଲେଖ କରିଛନ୍ତି । ଏହା ବାହାରେ ଉପମା ପ୍ରୟୋଗ କ୍ଷେତ୍ରରେ କାଳିଦାସ, ମାଘ, ଭାରବି ପ୍ରଭୃତିଙ୍କ ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରଭାବ ର ମୁଦ୍ରା ଭଂଜୀୟ କାବ୍ୟର ଅଂଶ ବିଶେଷରେ ଅଙ୍କିତ । ତାଙ୍କ କାବ୍ୟରେ ଚିତ୍ରବନ୍ଧ, ଏକାକ୍ଷର, ଦ୍ୱାକ୍ଷର, ମହାଯମ–କାଦିର ସଂଯୋଜନାରେ ଭୋଜଙ୍କ ନିୟମାବଳୀ ତଥା ମାଘ ଓ ଭାରବିଙ୍କ ପ୍ରଭାବ ଉପଲବ୍ଧ ।

ପୂର୍ବସୂରୀ ଓଡ଼ିଆ କବି ସାରଳା, ବଳରାମ, ଜଗନ୍ନାଥ, ଅର୍ଜୁନ ଦାସ, କାର୍ତ୍ତିକ ଦାସ, ବିଷ୍ଣୁ ଦାସ, ଶିଶୁଶଙ୍କର ଦାସ, ପିତାମହ ଧନଞ୍ଜୟ ଓ ବୟୋ–ଜ୍ୟେଷ୍ଠ ଦୀନକୃଷ୍ଣଙ୍କୁ ଉପେନ୍ଦ୍ର ଅନୁସରଣ କରିଥିବା ସମୀକ୍ଷକ ମାନଙ୍କ ଦ୍ୱାରା ପ୍ରମାଣିତ ।

ବହୁ ଶାସ୍ତ୍ରଦର୍ଶୀ ଉପେନ୍ଦ୍ର ପୁରାଣ, ଅଳଙ୍କାର, ବ୍ୟାକରଣ, ଜ୍ୟୋତିଷ, ଆୟୁର୍ବେଦ, କାମ ଶାସ୍ତ୍ରରୁ ବିଭିନ୍ନ ବିଷୟ, ଭାବ, ତତ୍ତ୍ୱ, ଆଦର୍ଶ ଓ ଉଦାହରଣ ଗ୍ରହଣ କରି ଶାସ୍ତ୍ରକାବ୍ୟମାନ ରଚନା କରିଛନ୍ତି । ପୁରାଣ ଘଟଣାଭିତ୍ତିକ ଶତଶତ ଉପମା ଭଞ୍ଜୀୟ କାବ୍ୟ କୃତିରେ ପରିଦୃଷ୍ଟ ହୋଇଥାଏ । ୬) ପଣ୍ଡିତ, ଅର୍ଥୀ, କୋବିଦ, ପୁରାଣ, ଅଭିଧାନ ଓ ଅଳଙ୍କାରବିତ୍ ତଥା ଶବ୍ଦଜ୍ଞାନୀ ମାନଙ୍କ ପାଇଁ କାବ୍ୟ ପ୍ରଣୟନ କରୁଛନ୍ତି ବୋଲି କବିଙ୍କ ବାରମ୍ବାର ଉଦ୍‌ଘୋଷଣା ଏହି ଭାବକୁ ସମର୍ଥନ କରିଥାଏ । କବିଙ୍କ ଉକ୍ତି ଧନୀ ବଣିକ ପସରା ସମାନ । ବିବିଧ ରସ ଦ୍ରବ୍ୟରେ ପୂର୍ଣ୍ଣ ( ଲା. ବ ୦୮/୬୫ ) ମଧ୍ୟରେବି ଏଇ ଲକ୍ଷ୍ୟ ଅଭିବ୍ୟକ୍ତ ।

କେବଳ ବାଚବୈଦଗ୍ଧ୍ୟ, ବର୍ଣ୍ଣନାବିଳାସ, ଅଳଙ୍କରଣ ଓ ଆଙ୍ଗିକ ଚମତ୍କୃତି ମଧ୍ୟରେ ଭଞ୍ଜଙ୍କ କାବ୍ୟ ପରିକଳ୍ପନା ସୀମିତ ନୁହେଁ । ସେ ରସର ପ୍ରାଧାନ୍ୟ ସ୍ୱୀକାର କରୁଥିଲେ – " ରସକୁ ବର୍ଣ୍ଣନା କଲେ କବିତ୍ୱ ବଢ଼େଇ " ( ରସମଞ୍ଜରୀ ୧/୧/୪୨) କିନ୍ତୁ ସେ ରସକୁ ଅଳଙ୍କାର୍ଯ୍ୟ ପରିବର୍ତ୍ତେ ଅଳଙ୍କାର ଭାବେ ଗ୍ରହଣ କରିଛନ୍ତି । ସେ ରସକୁ କାବ୍ୟର ଆତ୍ମାରୂପେ ସ୍ୱୀକାର କରିନାହାନ୍ତି । ଆଦି ଓ ମଧ୍ୟ–ଯୁଗର ସଂସ୍କୃତ ମହାକାବ୍ୟରେ ଶାନ୍ତ ଓ ବୀରରସର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ । ଶ୍ରୀହର୍ଷ ଓ ଜୟଦେବଙ୍କ ପରି କବି ଶୃଙ୍ଗାର ରସକୁ ପ୍ରାଧାନ୍ୟ ଦେଇ କାବ୍ୟ ସୃଷ୍ଟି କଲେ । ତାଙ୍କ ଦୃଷ୍ଟିରେ ରସ–ସାର ଶୃଙ୍ଗାର ବ୍ୟକ୍ତହେଲେ ଉତ୍ତମ ଛାନ୍ଦଗୀତ ହୁଏ । ( ର. ହା ୧/୫ ) ଭଞ୍ଜୀୟ କାବ୍ୟର ମୂଳପିଣ୍ଡ ଶୃଙ୍ଗାର ରସ ହେଲେହେଁ କାବ୍ୟିକ ଚମତ୍କାରିତା ଏହାର ଆତ୍ମା । କବି 'ନାରିକେଳ ପାକ' ମଧ୍ୟରେ 'ନାରୀ କେଳି' ବର୍ଣ୍ଣନା ଦିଗରେ ଆଗ୍ରହୀ ହୋଇଛନ୍ତି । 'ଜ୍ଞାନରତ୍ନ' ବିନା କବିଙ୍କ 'ଇକ୍ଷୁଲତିକା' ତୁଲ୍ୟ କାବ୍ୟର ରସ ଆସ୍ୱାଦନ ଅସମ୍ଭବ । ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସମସ୍କନ୍ଧ କରିବା ନିମିତ୍ତ କବିଙ୍କ ସ୍ପର୍ଦ୍ଧିତ ମନୋଭାବ, ପୂର୍ବବର୍ତ୍ତୀ କାବ୍ୟ ପରମ୍ପରାରୁ ଯୁଗୀୟ ରୁଚି ଓ ଆଦର୍ଶ ଉପେନ୍ଦ୍ରଙ୍କ କାବ୍ୟ କଳ୍ପନାକୁ ନିୟନ୍ତ୍ରଣ କରିଥିଲା । ଏହାଥିଲା ସଚେତନ କବି ମାନସର ପ୍ରଯତ୍ନ ସିଦ୍ଧ ସୃଷ୍ଟି । ତେଣୁ ଅନେକାଂଶରେ ବସ୍ତୁ–ନିଷ୍ଠ । ଯୁଗୀୟ ଆଦର୍ଶରେ ଭଞ୍ଜଙ୍କ କାବ୍ୟ ହୋଇଛି ଶୃଙ୍ଗାରାଶ୍ରୟୀ ନାୟିକା ଓ ଆଙ୍ଗିକ ପ୍ରଧାନ । ସଂଗୀତର ମଧୁମୁର୍ଚ୍ଛନା, ବର୍ଣ୍ଣନା ବୈଚିତ୍ର୍ୟ, ଅଳଙ୍କ–ରଣ ଓ ଅତିରଞ୍ଜନଗତ ଚମତ୍କୃତିରେ ଗରୀୟାନ ।

କବି ସମ୍ପର୍କରେ ଉପେନ୍ଦ୍ରଙ୍କ ଅଭିମତ ପରୋକ୍ଷ ଓ ସଂକ୍ଷେପ ଅଥଚ କାବ୍ୟ ସମ୍ପର୍କରେ ତାଙ୍କର ମନ୍ତବ୍ୟ କେତେକାଂଶରେ ପ୍ରତ୍ୟକ୍ଷ ଓ ବହୁଳାଂଶରେ ପରୋକ୍ଷ । ସେ ସର୍ବାନ୍ତଃକରଣରେ ଅଳଙ୍କରଣ ଓ

ଅତିରଞ୍ଜନକୁ ଶ୍ରେଷ୍ଠକବି କର୍ମରୂପେ ସମର୍ଥନ ଜ୍ଞାପନ କରିପାରି ନ ଥିଲେ । ତାଙ୍କ ଦୃଷ୍ଟିରେ ସୌନ୍ଦର୍ଯ୍ୟ ହିଁ କବିର ଧ୍ୟେୟ - ଏହା ' ଉପେନ୍ଦ୍ରଙ୍କ ଦୃଷ୍ଟିରେ କବି ' ପ୍ରବନ୍ଧରେ ଆଲୋଚିତ । ୭), ରସଘନ ଆନନ୍ଦ ଓ ଚତୁର୍ଯ୍ୟମର୍ଯ୍ୟ ମନୋଜ୍ଞ ଉପମା ମାଧ୍ୟମରେ ଅରୂପକୁ ରୂପଦେବାକୁ ସେ କାବ୍ୟର ଚରମ ଆଦର୍ଶ ବୋଲି ଗ୍ରହଣ କରିଥିଲେ । ଉପେନ୍ଦ୍ର ତାଙ୍କର କାବ୍ୟ ଚେତନା ବା ଆଦର୍ଶ ପ୍ରତି କେତେଦୂର ବିଶ୍ୱସ୍ତ ହୋଇ ପାରିଛନ୍ତି ତାହା ଭିନ୍ନ କଥା । ତାହାର ବିଚାର ସ୍ୱତନ୍ତ୍ର ଗବେଷଣାର ବିଷୟ । କିନ୍ତୁ ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ଯେ ଭଞ୍ଜୀୟ କାବ୍ୟ କେବଳ ତାହାର ଅଳଙ୍କରଣ ପ୍ରବୃତ୍ତି ବା ସଂଗୀତ ଧର୍ମରୁ ନୁହେଁ ରସାଳ ଭାବ ସଂପଦ ଯୋଗୁ ଅର୍ଥୀକୋବିଦ-ବିଦଗ୍ଧମାନଙ୍କ ରସତୃଷ୍ଣାକୁ ପରିତୃପ୍ତ କରି ଆସୁଛି ।



୧ । କ) ଏତପରାକୃତ କାବ୍ୟଛାନ୍ଦ ପ୍ରାନ୍ତସତ - କୋ. ବ୍ର. ସୁ. ୧୧/୩୧
ଖ) ସୁଖେ ବଞ୍ଚିଲେ ଦମ୍ପତି ପ୍ରବନ୍ଧ ସଂପୂର୍ଣ୍ଣ - ପ୍ରେ. ସୁ. ୧୬/୧୩
ଗ) ବିଦୂଷଣ ଗୀତ ସୁଜନେ ଶୁଣ ବୈ. ବି. ୨୧/୧
ଘ) କବି ଉପଇନ୍ଦ୍ରକୃତ ଗୀତ ସୁଗୀତକ କ. କ ୯/୩୬
ଙ) ବିରଚଇ କରିବି ଉତ୍ତମ ଛାନ୍ଦଗୀତ ର. ହା ୧/୫
ଚ) କହିଲ ଉପେନ୍ଦ୍ର ଏ ରସ ତୋଷଚିତ୍ତ ଯେ - ସୁ. ପ ୬/୩୭
ଛ) ଲକ୍ଷଣ ସହିତ ସାହିତ୍ୟ ଏହିଚିତ ମୋହିତ କୋ. ବ୍ର. ସୁ. ୧୮/୬୫
ଜ) ବିଚିତ୍ର କବିତ୍ୱ ମର୍ଗେ ପ୍ରସରିଲ ବୁଦ୍ଧି । ବୈ .ବି. ୫୨/୫୧
ଝ) ଚରିତ ଛାନ୍ଦ ପ୍ରବନ୍ଧେ ହୋଇଗଲା ଶେଷ । ସୁ. ପ. ୧୨/୪୧
ଞ) ଏ ଗୀତ ବର ବରବର୍ଣ୍ଣିନା ବିଧି । କୋ, ବ୍ର ସୁ. ୮/୨୨
ଟ) ବୀରବର ଉପଇନ୍ଦ୍ର ଭଞ୍ଜ କହେ ରସ । ବୈ. ବି ୩୨/୬୨
ଠ) ନାନା ଅଭିଧାନ ବିଧାନପରି । ନାଟକ କାବ୍ୟ ଅଙ୍ଗେ ମାଧୁରୀ । ଲା. ବ. ୪୮/୬୨
ଡ) ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର ······· ଲା. ବ. ୪୮/୬୩
ଢ) ପ୍ରକାଶ କରିବି ଏବେ ଛାନ୍ଦଗୀତ ରେ । ଚି. ଲେ. ୯/୭

୨ । କ) କହେ ଉପଇନ୍ଦ୍ର ଭଞ୍ଜ ବୀରବର ଯୁବାଜନ କର୍ଣ୍ଣ ଉତ୍ସବ । ଲା. ବ. ୫/୩୨
ଖ) ଶୁଣନ୍ତେ ରସିକ ରସ କର୍ଣ୍ଣମନଲୋଭ । ତତୈବ ୨/୧
ଗ) ରସିକ କୋବିଦ ଶ୍ରୁତିମୁଖସ୍ୱାଦ ମଧୁର ଛାନ୍ଦ ଏ କୃତ ହେ, ସୁଜନେ । କୋ. ବ୍ର. ସୁ ୨୨/୨୪

୩ । ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ - ଓଡ଼ିଆ କାବ୍ୟ କୌଶଳ - ପୃ - ୧୮୯

୪ । କ) ର. ହା ୧/୫, ପ୍ରେ. ସୁ. ୧/୫, ସୁ. ପ ୧/୧୨, ଲ. ବ ୧/୭-୮ ବୈ. ବି ୫୨/୫୧,
କୋ. ବ୍ର. ସୁ ୧/୬୦-୬୨ ଓ ୩/୧

ଖ) ର. ପ ୨/୪/୧, ଅନୁକ୍ରମଣି ୧୫ ଓ ୨୧ ଚି. କା. ବ. ୧/୪୬, ୨/୨

୫ । ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ - ଓଡ଼ିଆ କାବ୍ୟ କୌଶଳ ପୃ ୨୦୭

୬ । ବୈ. ବି ୬/୧, କୋ. ବ୍ର. ସୁ ୮/୩, ଲ. ବ. ୫/

୭ । ଦ୍ରଷ୍ଟବ୍ୟ - ଡକ୍ଟର ଲକ୍ଷ୍ମୀଧର ଦାସ - ଉପେନ୍ଦ୍ରଙ୍କ ଦୃଷ୍ଟିରେ କବି ଭଞ୍ଜ ସ୍ମରଣିକା - ଆଦର୍ଶ-ପାଠାଗାର - ରାଉରକେଲା ୧୯୮୯ ।

ପ୍ରାଧ୍ୟାପକ ଓଡ଼ିଆ ଭାଷା ସାହିତ୍ୟ
ଖଲିକୋଟ ମହାବିଦ୍ୟାଳୟ
ବ୍ରହ୍ମପୁର-୧

●



# ଭଞ୍ଜଙ୍କ କାବ୍ୟରେ ସ୍ତନ ବର୍ଣ୍ଣନା ର ବୈଶିଷ୍ଟ୍ୟ

**ଡଃ କଶେ ର ଚନ୍ଦ୍ର ମିଶ୍ର**
ଅବସର ପ୍ରାପ୍ତ ପ୍ରାଧ୍ୟାପକ
ଗୋଦାବରୀଶ ନଗର ବ୍ରହ୍ମପୁର - ୭୬୦୦୦୧

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବହୁମୁଖୀ ପ୍ରତୀଭାଧର ଉପେନ୍ଦ୍ର ମୁଖ୍ୟତଃ କାବ୍ୟ ସ୍ରଷ୍ଟାଭାବେ ସମ୍ମାନିତ । ତାଙ୍କର ଅଧିକାଂଶ କାବ୍ୟ ନାରୀପ୍ରଧାନ ଓ ସଂସ୍କୃତ କାବ୍ୟ ରଚନା ଶୈଳୀ ଅନୁସୃତ । ସଂସ୍କୃତ ମହାକାବ୍ୟ ଲକ୍ଷଣରେ ନାରୀ ବା ନାୟିକାର କେଉଁ କେଉଁ ଅଙ୍ଗ ବର୍ଣ୍ଣନୀୟ, ସେ ସମ୍ବନ୍ଧରେ ଏକ ଦୀର୍ଘ ତାଲିକା ପ୍ରଦାନ କରାଯାଇଛି । ସେ ମଧ୍ୟରେ ଉରୋଜ ବା ସ୍ତନର ବର୍ଣ୍ଣନା ସ୍ୱୀକୃତି ଲାଭ କରିଛି ।୧। ବିଶେଷ କରି ଶୃଂଗାର ରସାତ୍ମକ କାବ୍ୟରେ ନାରୀ ଆଲମ୍ବନ ବିଭାବ ଓ ତାର ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟରେ ମୁଖ ପରି ସ୍ତନର ଆକର୍ଷଣ ସର୍ବାଧିକ । ତେଣୁ ଆବହମାନ କାଳରୁ ବିଶିଷ୍ଟ କବିଙ୍କ କୃତିରେ ସ୍ତନର ବର୍ଣ୍ଣନା ସ୍ଥାନ ପାଇବା ବିଚିତ୍ର ନୁହେଁ । ଲୌକିକ ଜଗତରେ ଯୁବତୀ ନାରୀର ଆକର୍ଷଣୀୟ ଅଙ୍ଗ ମଧ୍ୟରେ ସ୍ତନ ବା କୁଚର ସ୍ଥାନ ସର୍ବାଧିକ ନୁହେଁକି ? ନାରୀର ଏହି ବିଶିଷ୍ଟ ଅଙ୍ଗ ପୁରୁଷ ହୃଦୟରେ ଅନିର୍ବଚନୀୟ କାମୋଦ୍ଦୀପନା ସୃଷ୍ଟି କରେ । ଏହି ଅଙ୍ଗର କ୍ରମ ବିକାଶ ନାରୀର ଯୌବନୋଦ୍‌ଗମର ପ୍ରଥମ ଓ ସ୍ପଷ୍ଟ ସୂଚକ । କେବଳ ଏତିକି ନୁହେଁ, ଏହି ଅଙ୍ଗର ଔନ୍ନତ୍ୟ ନାରୀକୁ ଉତ୍‌ଫୁଲ୍ଲ ଓ ଗର୍ବିତ କରିଥାଏ । ଏହାକୁ କୁଚ, ବକ୍ଷୋରୁହ, ଉରୋଜ, ଉରଜ, ବକ୍ଷୋଜ, ହୃଦୟଜ ପ୍ରଭୃତି ଶବ୍ଦରେ ବ୍ୟକ୍ତ କରାଯାଇଛି । ଉପେନ୍ଦ୍ରଙ୍କ ରସଲେଖା ( ର ଲେ ) ରସିକ ହାରବଳୀ ( ର ହା ) ପ୍ରେମ ସୁଧାନିଧି ( ପ୍ରେ ସୁ ) ସୁଭଦ୍ରା ପରିଣୟ ( ସୁ ପ ) ଲାବଣ୍ୟବତୀ ( ଲା ବ ) କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ( କୋ ବ୍ର ସୁ ) ବୈଦେହୀଶ ବିଳାସ ( ବୈ ବି ) ପ୍ରଭୃତି ସାତଗୋଟି ମୁଖ୍ୟକାବ୍ୟରେ ଏହି ହୃଦୟ ଦ୍ରାବକ ଅଙ୍ଗର ବର୍ଣ୍ଣନା କିପରି କରାଯାଇଛି, ତାର ଏକ ସବିଶେଷ ଉପସ୍ଥାପନା ଏ ପ୍ରବନ୍ଧର ଲକ୍ଷ୍ୟ ।

ଉପେନ୍ଦ୍ର ମୁଖ୍ୟତଃ ପ୍ରେମର କବି । ମିଳନ ବା ସମ୍ଭୋଗ ଅପେକ୍ଷା ବିରହ ବା ବିଚ୍ଛେଦର ଚିତ୍ରଣ ସମଧିକ ଓ ମନୋଜ୍ଞ । ଉପେନ୍ଦ୍ରଙ୍କ କଳ୍ପନାରେ ନାରୀ ସଂଭୋଗର ବସ୍ତୁ ହେଲେହେଁ ଜୀବନସଂଗିନୀ ଓ ମନୁଷ୍ୟର ଧର୍ମ, ଅର୍ଥ, କାମ, ମୋକ୍ଷାଦି ଚତୁର୍ବର୍ଗ ପ୍ରାପ୍ତିର ସହାୟକ । ଆଲୋଚକଙ୍କ ମତରେ ଉପେନ୍ଦ୍ର ପରକୀୟା ପ୍ରୀତି ପ୍ରଣୋଦିତ ସାମାଜିକ ଅବ୍ୟବସ୍ଥା ଦୂରୀକରଣ ପାଇଁ ସ୍ୱକୀୟା ପ୍ରୀତିର ଜୟଗାନ କରିଛନ୍ତି ।୨। ଗାର୍ହସ୍ଥ୍ୟ ଜୀବନର ସ୍ୱପ୍ନିଳ ମଧୁର ସଙ୍ଗୀତ ତାଙ୍କ କାବ୍ୟର ପ୍ରତି ଛନ୍ଦେ ଛନ୍ଦେ ଉଦ୍‌ଗୀତ ହୋଇଛି । ସେ ମଧ୍ୟରେ ନାରୀର ସୌନ୍ଦର୍ଯ୍ୟ ଚିତ୍ରଣ ତାଙ୍କ ସୃଷ୍ଟିର ବିଶେଷ ଭାଗ ଅଧିକାର କରି ରହିଛି । ଭଞ୍ଜୀୟ ଯୁଗରେ ନାରୀର ସାମଗ୍ରିକ ରୂପବିଭବ ସହିତ ନଖ-ଶିଖ ବର୍ଣ୍ଣନା ଦୃଷ୍ଟି ଆକର୍ଷଣ କରେ । ଚିତ୍ରକାର ତୂଳୀରେ ଚିତ୍ରର ପ୍ରତ୍ୟେକ ଅଂଶକୁ ରଙ୍ଗରେଖାରେ ଚିତ୍ରିତ କଲାପରି କବି ଉପେନ୍ଦ୍ର ନାରୀର ପ୍ରତ୍ୟେକ ଅଙ୍ଗକୁ ନିରୀକ୍ଷଣ କରି ତାର ସ୍ୱତନ୍ତ୍ର ସୌଷ୍ଠବ ଆଙ୍କି

ଯାଇଛନ୍ତି । ନାରୀ ସ୍ତନର ସଂସ୍ଥିତି ପାଇଁ ସର୍ବଦା ସଚେତନ ହୋଇ ବସ୍ତ୍ରାବୃତ କରି ରଖିଥିଲେ ମଧ୍ୟ ତାର ସମୁନ୍ନତ ସ୍ଥିତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । ସ୍ତନ,ନଖକ୍ଷତ, ଜଘନ, ଗୁପ୍ତାଙ୍ଗ ପ୍ରଭୃତିର ବର୍ଣ୍ଣନାକୁ ଅଶ୍ଳୀଳ କହି କେହି କେହି ନାସା କୁଞ୍ଚନ କରିଥାନ୍ତି । କିନ୍ତୁ ଶୃଙ୍ଗାର ପ୍ରଧାନ କାବ୍ୟରେ ଏ ସବୁର କଳାତ୍ମକ ଚିତ୍ରଣ ଶ୍ଳୀଳ ଓ ଅଶ୍ଳୀଳ ବିଚାରର ବହି ଉର୍ଦ୍ଧ୍ୱରେ ।

କବିର ଏକମାତ୍ର ଆଧାର ଭାବବୋଧକ ଶବ୍ଦ ସେହି ଶବ୍ଦ ମାଧ୍ୟମରେ ଦେଶ କାଳରୁ ଭିନ୍ନ ପାଠକ ହୃଦୟରେ ନିଜ ଅନୁଭବର ସଂପ୍ରସାରଣ ପାଇଁ ସବିଶେଷଣ କଥନଭଙ୍ଗୀ ବା ଉପମା-ଚିତ୍ରକଳ୍ପାଦିର ଆଶ୍ରୟ ନିଏ । ସେ ମଧ୍ୟରେ ସବିଶେଷଣ କଥନ ଭଙ୍ଗୀଟି ଅସ୍ପଷ୍ଟ, ଚିତ୍ରହୀନ ଓ ମ୍ଳାନ । କିନ୍ତୁ ଉପମା ଅଧିକ ସ୍ପଷ୍ଟ,ଦୀପ୍ତ ଓ ଭାବ ସଂପ୍ରେଷକ ହୋଇଥାଏ । କବି ଉପେନ୍ଦ୍ର ସ୍ତନ ବର୍ଣ୍ଣନାରେ ଏହି ଉଭୟବିଧ ପଦ୍ଧତିର ଆଶ୍ରୟ ନେଇଛନ୍ତି ।

ଉଚ୍ଚ ଘଞ୍ଚ କୁଚ ବେନି, ହେଲଦିନୁ ଚନ୍ଦ୍ରବଦନୀ
ଦେଖିତ ନାହିଁ ଅବନୀ ଲୋଚନ ବେନି ।
( ଲା-ବ ୧୩ ୧୦ )

ସନ୍ଧିହୀନ ଅତି ପୀନ ତୁଙ୍ଗ ବର୍ତ୍ତୁଳ କଠିନ ଉରଜ
( ସୁ ପ ୩-୨୮ )
ସୁଘଞ୍ଚ କୁଚ ପୃଥୁଳ ଉଚ୍ଚ ଘଞ୍ଚ ସେ ମଞ୍ଚ ସ୍ୱର୍ଗ ।
( ର-ଲେ ୧୪-୨୪ )

ଏଥିରେ ସନ୍ଧିହୀନ, ପୀନ, ବର୍ତ୍ତୁଳ, କଠିନ, ତୁଙ୍ଗ ପ୍ରଭୃତି କେତେଗୋଟି ବିଶେଷଣରେ ଯୁବତୀ ନାରୀର ସ୍ତନ ଶୋଭା ବର୍ଣ୍ଣିତ । କିନ୍ତୁ ଉପମା ଆଧାରରେ ଏହି ସ୍ତନସୌନ୍ଦର୍ଯ୍ୟ ସ୍ଥଳ ବିଶେଷରେ ଅଧିକ ରସାଳ ଓ ମନୋମୁଗ୍ଧକର ।

ଉପେନ୍ଦ୍ରଙ୍କ ଉପମା ପ୍ରୟୋଗକୁ ଲକ୍ଷ୍ୟକଲେ ସ୍ପଷ୍ଟହୁଏଯେ, କବି ଏହି ଅଙ୍ଗର ସ୍ୱରୂପ ପ୍ରକାଶ ପାଇଁ ଉକ୍ତ ସାତଗୋଟି କାବ୍ୟରେ ଅର୍ଦ୍ଧଶତାଧିକ ଉପମାନ ବ୍ୟବହାର କରିଛନ୍ତି ଓ ସେମଧ୍ୟରେ ମେରୁ, ମନ୍ଦର ବା ପର୍ବତ, ଶିବ ବା ଶମ୍ଭୁ, କଳସ ବା କୁମ୍ଭ, ସଂପୁଟକ ( ଫରୁଆ ) ଚକ୍ରବାକ, ନାରିକେଳ, ଶ୍ରୀଫଳ ( ବେଲ ) ଆଦି ଉପମାନ ବହୁବାର ବ୍ୟବହୃତ । ପର୍ବତ ଉପମାନ ବିଷୟରେ କବି ନିଜେ ଏହାକୁ ଚତୁର୍ଯ୍ୟପୂର୍ଣ୍ଣ ଅତିଅଞ୍ଜନ ବୋଲି ସ୍ୱୀକାର କରିଛନ୍ତି ।

ଉଚ୍ଚ ପୃଥୁଳ ମେରୁରୁ କରକଶ କୁଳିଶରୁ
ବହିଥିବ ସ୍ତନଗୁଣ ଘନ ଘଟଣ । (ର ଲେ ୩-୨୭)

ଏଥିରେ ସ୍ତନର ଔନ୍ନତ୍ୟ ଓ କାଠିନ୍ୟକୁ ଅତିରଞ୍ଜନର ଚରମ ସୀମାରେ ପହଞ୍ଚାଇ ଦେଇଛନ୍ତି । ସାମାନ୍ୟ ଭାବରେ ପର୍ବତ ଉପମାନ ଟି ନିମ୍ନରେ ପ୍ରଦତ୍ତ ।

କୁଚ ଅଚଳେ ଯାକି ଚଞ୍ଚଳେ ଘୋଡ଼ା ଅଞ୍ଚଳେ ଭଣି ।
( ପ୍ରେ ସୁ-୧୦ ୧୩

ପାଞ୍ଚେ ମନ୍ଦର କୁଚ ବଢ଼ିବାରେ, କିଂପା ବୁଡ଼ ନ
ମଲି ପାରବାରେ । ( ଲା-ବ-୩-୪ )

ବ୍ୟତିରେକ ଆଧାରେ କୁଚକୁ ମନ୍ଦର ସହିତ ତୁଳନା ହାସ୍ୟକର ।

କିନ୍ତୁ ସ୍ଥଳ ବିଶେଷରେ ପର୍ବତ ଉପମାନଟି କବି କଳ୍ପନାକୁ ମଧୁର୍ ତର ଓ ଅର୍ଥ ଗର୍ଭିକ କରିଛି ।

ଉତ୍ତାନ ପ୍ଲବନେ ଉରଜ ମାନେ କି ମନୋହର
ନଳଦୀକ୍ଷା ପାଇ ନାରୀକି ଭେଳା କଲେ ଭୂଧର ।
( ଲ ବ ୬-୩୧ )

କବି ବିଚାରିଲେ ବିଚିତ୍ର ହେଲା ତୁମ୍ଭା ବୁଡ଼ଳା ।
ନ ବୁଡ ଶଇଳ ସଲିଳ ଉପରରେ ରହିଲା ।
( ଲ ବ ୬-୧୧

ଉତ୍ତାନ ପ୍ଳବନରେ ନିତମ୍ବ ଉଗଟି ବୁଡଯିବା ଓ ସ୍ତନ ଦୁଇଟି ଦୃଶ୍ୟମାନ ହବା ଚିତ୍ର ଏଥିରେ ଅଙ୍କିତ । ଅଦ୍ଭୁତୋପମା ବା ଅତିଶୟୋକ୍ତି ମାଧ୍ୟମରେ ନାରୀର ସ୍ତନକୁ ପର୍ବତ ଓ କରୀକୁମ୍ଭ କହିବା ଭଙ୍ଗୀଟି ନିମ୍ନରେ ପ୍ରଦତ୍ତ ।

ସର୍ବମତରେ ସନମତ ଏମନ୍ତ ପର୍ବତ ପରେ ଜାତ ଲତା
ଲତାରୁ ( ଶରୀରରୁ ) ଏବେ ପର୍ବତ ( ସ୍ତନ ) ଜାତ
ହେଲା ଯହିଁ କର୍ମ ବେ ଉର୍ଦ୍ଧ୍ୱରେତା

ହା ହା ଶେଭିତା, ଦେଖି କେ ନୋହିବ ଲୋଭିତା,

କରୀ (ଜଘନ) ପରେ ହରି (କଟି) ହରି ( କଟି )

ପରେ କରୀ (ସ୍ତନ) ଚଢାଇଲା ଏବେ ବନିତା
(ପ୍ରେ ସୁ ୪-୨)

ଅବଶ୍ୟ ଏଥିରେ ପୂର୍ବବର୍ତ୍ତୀ କବିଙ୍କ ଛାୟାପାତ ଲକ୍ଷ୍ୟ କରଯାଇପାରେ । ୩ ।

ସେହିପରି ଶିବ ବା ଶମ୍ଭୁ ଉପମାନଟି କବି ବାରମ୍ବାର ପ୍ରୟୋଗ କରିଛନ୍ତି ।

ମାର ଦର ହର ହେବାକୁ ପ୍ରଥମେ ଉରଜଶମ୍ଭୁ
ବଦନରେ (ଲ-ବ ୧୯-୨)

ସ୍ୱୟଂଭୂ ଶମ୍ଭୂ କୁଚ ରୂପଧରି (ଲ-ବ ୧୦-୧୬)

ଉରଜ ମହେଶ ଉନ୍ନତି ପାଇଁ ନୀଳଶୈଳ
ଗଜକୃତ୍ତି ଘୋଡାଇ (କୋ ବ୍ର ସୁ ୧୨-୧୪)

କିନ୍ତୁ ହସ୍ତଯୁକ୍ତ ସ୍ତନର ବର୍ଣ୍ଣନା ରମଣୀୟ :

ବକ୍ଷୋଜ ସ୍ୱୟଂଭୂ ଶମ୍ଭୂ କରପଦ୍ମେ ପୂଜି
କାଳଭୟ ନାହିଁ । (ବୈ-ବି ୨୦-୧୨)

ନଖକ୍ଷତ ସହିତ କୁଚ ଓ ହସ୍ତର ବର୍ଣ୍ଣନା ଅତୀବହୃଦ୍ୟ

ପାଣି ପଦ୍ମେ ପୂଜି ଭଲ ନ ଗର, ନଖକ୍ଷତେ କଲା
ଚନ୍ଦ୍ରଶେଖର (ପ୍ରେ ସୁ ୬-୨୩)

ହିମରଜଯୁକ୍ତ ଉରଜ

ନୀରଜ ମୁଖୀଙ୍କ ଉରଜ ହିମରଜରେ ଭୂଷି,

ଦର୍ଶନ ଲୋଭରେ ନିର୍ଭର ହେଲେ ଯୋଗୀସନ୍ୟାସୀ
(ର ହା ୩-୧୮)

କୁଳଟା ଉରଜ ବିଟେ ପୀଡବାର ଯହିଁ

ଆଜନ୍ମ ବ୍ରହ୍ମଚରୀଏ ଶମ୍ଭୁ ପୂଜେଧ୍ୟାୟୀ
(କୋ–ବ୍ର-ସୁ ୩୩-୪୮)

ଏଥିରେ ଶମ୍ଭୁ ଉପାଦାନଟି ପରିହାସ ବ୍ୟଂଜକ ।

ନଖକ୍ଷତ ଓ କୁଚ—

ସରୋବରରେ ପଶି ସେ ତାକୁ ଧରଷି
କୁଚେ ନଖକ୍ଷତ ଦେଖିଲେ,

ସ୍ୱୟଂଭୂ ଶମ୍ଭୁକୁ ଚନ୍ଦ୍ରଶେଖରଭ କେ କଲା
ଏତେ ପରୁବିଲେ । (ସୁ ପ ୧୪-୨୧)

ବକ୍ଷୋଜରେ ରଜିତ ନଖକ୍ଷତ ବିଧୁଅର୍ଦ୍ଧ
ଶମ୍ଭୁଶିରେ ଯେମନ୍ତ (ବୈ-ବି ୧୪-୩୧)

ନେତ୍ର, ଓ କୁଚ—

ଶ୍ରେ ପତି ପ୍ରାପତି ଇଚ୍ଛାକରିନାରୀ
ଶମ୍ଭୁ ପୂଜିଲା କି ନୀରବେ, ( ଲ-ବ ୨୭-୨୭ )

ମାଳୀ ଓ କୁଚ—

ମାଳୀ ସେବିତ ହୋଇଅଛି ଯେଣୁ

ହେମ ଭୂମିରୁ ଜାତ ଶମ୍ଭୂ ଏଣୁ (ବ ଲେ ୫-୧୧)

ଏଥିରେ ମାଳୀ (ହାର ଶିବସେବକ) ଶବ୍ଦରେ ଶ୍ଳେଷ ରଖି ସୁନ୍ଦର ରୀତିରେ ବ୍ୟକ୍ତ କରିଛନ୍ତି ।

ସେହିପରି କୁଚ ପାଇଁ କଳସ ବା ତାର ପ୍ରତି ଶବ୍ଦକୁ ଉପମାନ ରୂପେ ବ୍ୟବହାର କରି ଆକାର ସାମ୍ୟ ପ୍ରଦର୍ଶନ କରିଥିଲେ ମଧ୍ୟ ସ୍ଥଳ ବିଶେଷରେ ଉପସ୍ଥାପନ ଭଙ୍ଗୀଟି ହୃଦୟସ୍ପର୍ଶୀ ହୋଇ ପାରିଛି । ନାରୀକୁ ସର୍ବମଙ୍ଗଳ ବସ୍ତୁ ରୂପେ ପ୍ରତିପାଦନ ବେଳେ କୁଚକୁ କୁମ୍ଭ କହିବା ତାତ୍ପର୍ଯ୍ୟପୂର୍ଣ୍ଣ ।

ପଲ୍ଲବ ଦ୍ରୋଣ ଅଧର
ପୟୋଧର ପୂର୍ଣ୍ଣକୁମ୍ଭ ମୀନନୟନ,
ଗତି ହଂସବତ ପାରବତ ଗଳ ମଙ୍ଗଳ ଅଷ୍ଟକ ବଚନ
ଜଘନ ଭଦ୍ରାସନ ଉରୁ କଦଳୀ
ଶଙ୍ଖ ମୃଦୁହାସ ଚୁଚୁକ କ୍ରମୁକ ସର୍ବମଙ୍ଗଳ ପ୍ରଦଭଳି ।
ଲ-ବ ୨୩-୩୬)

ମଧୁଶଯ୍ୟା ଗୃହରେ ନାୟକ ସମ୍ମୁଖରେ ନାୟିକା ଦଣ୍ଡାୟମାନା ହେବା ଦୃଶ୍ୟଟିର ଚିତ୍ରଣରେ କୁଚକୁ କଳସ କହିବା ଏକ ମନୋଜ୍ଞ ଚିତ୍ରଣ ।

ମୋହିନୀ ପୀୟୂଷ କୁମ୍ଭ ବସନେ ଘୋଡାଇ
ଇନ୍ଦୁ ଆଗେ ଉଇହେଲା ପ୍ରାୟ ଶୋଭପାଇ,
ଦେଖି ପୀନସ୍ତନୀ ତୃଣାଭ, ମଞ୍ଜୁ ବିଦ୍ୟୁଜିତ ପ୍ରଭ
( ଲ ବ ୩୩-୬ )

ବୀର ବିସ୍ମରଇ ମୋହିନୀ ଏ ବେନି
ସୁଧାକୁମ୍ଭ ଘେନିଉଭ । (କୋ-ବ୍ର-ଘୁ ୧୪-୧)

ଉଭୟରେ ନାଚୀକୁ ମୋହିନୀ ଓ ସ୍ତନକୁ ସୁଧାକୁମ୍ଭ ଉପମାନ ଦେଇ କବି କଲ୍ପ ଲୋକର ଚିତ୍ର ପାଠକ ସମ୍ମୁଖରେ ଆଙ୍କି ଯାଇଛନ୍ତି ।

ମନ ସହିତ କୁଚର ଏକତ୍ର ବର୍ଣ୍ଣନା ହୃଦୟଗ୍ରାହୀ ।

ସେ ଗଗ ଗଗ ଜନ୍ମାଇ ମନ ମୀନ ପକାଇଲା
କୁଚ କଳସେ (ସୁ ପ ୧୦-୨୮)

ମନମୀନ ହ୍ରଦ ସରୋବରେ ଥିଲା
କଟାକ୍ଷବନସୀ ପକାଇ
ତାର ବଦନେ ପ୍ରେମସୁଧା ଦେଇ
ଆକର୍ଷ ନେଇ ଉରଜ କଳସୀରେ
ମଦାଳସୀ ଅଛୁ ଥୋଇ । (ଲ ବ ୧୯ - ୭)

କୁଚକୁ ସ୍ଥଳ ବିଶେଷରେ ସଂପୁଟକ ବା ଫରୁଆ କହିବା ଭଙ୍ଗୀଟି ହୃଦୟକୁ ସ୍ପର୍ଶ କରେ ।

ସଂପୁଟ ଉପମା ଉରଜ ସଂଜ୍ଞ ମୁକୁତାମାଳା
କୁନ୍ଦ କଳରଙ୍କୁ । (ଲ-ବ ୧୦-୧୭)

ସେ ହାଟେ ଉରଜଙ୍କ ଯୁବତୀ ସିନ୍ଦୁର ସଂପୁଟକେ ବିକନ୍ତି ଓଷ୍ଠ ଉରଜ ଘୋଡାଇ ଛନ୍ତି ଅତି ଯତନେ
( ସୁ-ପ ୬-୧୦ )

ପୁଛିଲେ କୁନ୍ଦ କାରକ ନ ଦେଖାନ୍ତି ସଂପୁଟକ
ଆଦ୍ରିବାସେ ସ୍ତନ ରହି ଆତଙ୍କ ବହି ।
( କୋ-ବ୍ର-ଘୁ ୩-୨୧ )

କୁଚ ସହିତ କୁଚାଗ୍ର ବା ଚୁଚୁକର ବର୍ଣ୍ଣନା ଉପେନ୍ଦ୍ରଙ୍କ କାବ୍ୟରେ ଦୁର୍ଲ୍ଲଭ ନୁହେଁ ।

ଫଳ ଚୁମ୍ବଇ ଭ୍ରମର ବୋଲି
ଆଡପାଏଁ ତ ଶ୍ରବଣ ନ ଥିଲା !

ଶ୍ରୀଫଳ ଯୁଗଳକୁ ମଧୁର ମଧୁକୁ ଏବେ ସୁନ୍ଦରୀ
ପିଆଇଲେ ( ପ୍ରେ ସୁ ୪-୩ )

ଲଜ୍ଜିତ ଉଷା ଶୋଭା ଏ ଦେଖା ସ୍ତନ ଚୁଚୁକ
ଅଧରଯୋଖା,

କୁମ୍ଭେ କି ପୂଗ ପଲ୍ଲବ ଶାଖା ସ୍ଥାପି ତତ୍କାଳ
ଯେ । ( କୋ-ବ୍ର ସୁ ୨୭-୧୨ )

ବାଳୀ ବାଟୁଳି କି ସ୍ତନଗ୍ର ରୂପେ ସେ
ମନୋହର । (ବୈ-ବ ୩-୪୦ )

ଏଥିରେ ଚୁଚୁକ ପାଇଁ ଭ୍ରମର, ଗୁବାକ, ବାଟୁଳି
ପ୍ରଭୃତି ଉପମାନ ପ୍ରଦତ୍ତ ।

କବି ଏକା ଧାରରେ ଉତ୍ପ୍ରେକ୍ଷା ଅଳଂକାର ଆଧାରରେ ସ୍ତନପାଇ ବହୁ ଉପମାନ ପ୍ରୟୋଗକରି କଳ୍ପନା ବିଳାସର ଏକ ସୁରମ୍ୟ ପ୍ରାସାଦ ନିର୍ମାଣ କରିଛନ୍ତି । ଏହି ଉପମାନ ଗୁଡକ ବିଦ୍ୟୁତ୍ ପରି ଭବ ଝଟକରେ ଚେତନା ରଜ୍ୟରେ ଉଲ୍ଲାସ ସୃଷ୍ଟିକରି କ୍ଷଣକେ ବିଲୀନ ହୋଇଗଲେ ମଧ୍ୟ ସ୍ମୃତିରେ ଏକ ନିର୍ଦ୍ଦିଷ୍ଟ ରୂପ ଆଙ୍କି ଯାନ୍ତି ।

କିଏ କୃଷ୍ଣ ବାଳଲୀଳା କନ୍ଦୁକ, କିଏ ରତିରଞ୍ଜନ
ସଂପୁଟକ ।

କିଏ ଲାବଣ୍ୟ ସର ଚକ୍ରବାକ, କିଏ ନବସରସିଜ
କୋରକ, (ର-ଲେ ୪-୧୨)

କିଏ ପୀୟୁଷ କୋଷ ମନୋହର, କିଏ କୁମ୍ଭ ଯଉବନ
କରରୀ ।

କିଏ ମନସିଜ ଶିର ଟୋପର, କିଏ ମଲ୍ଲ ହାଧନ
କାଉିପାର । ( ୪-୧୩ )

କିଏ ଉଲଟ କନକ କଟୋରା, ଯୋଡ଼ା ହୋଇଛି
ପ୍ରେମରସପର ।

କିଏ ବାଣୀ ବୀଣା ତୁମ୍ବୀ ଯୁଗଳ, ହରିତାଳ ଚିତ୍ରରେ
ମହୋଜ୍ଜ୍ୱଳ । ( ୪-୧୪ )

ଅତିସରଳ ଶବ୍ଦରେ କବି ନାରୀ ଓ କୁଚ ସମ୍ବନ୍ଧୀୟ ନିଜ ଭବପ୍ରବଣ ଚେତନାକୁ ରୂପାୟନ କରିଛନ୍ତି । କିନ୍ତୁ ଲାବଣ୍ୟ ବତୀରେ—

ଉରଜ କନ୍ଦୁକ ଚକ୍ରବାକ ସଂପୁଟକ; କି ସ୍ୱୟଂଭୂ
ଶମ୍ଭୁ ତମ୍ଭୁ ଅମ୍ବୁଜ କୋରକ

ଶାତକୁମ୍ଭ କୁମ୍ଭ କୁମ୍ଭୀକୁମ୍ଭ ରମ୍ଭାକୋଷ, ମୁଦ୍ରିତ ଛତ୍ର
ବୋଇତ ସ୍ୟନ୍ଦନ କଳସ ।

କାମ ନୃପ ଟୋପର ଉଲଟ ନିଶାଣ, କି ମଲ୍ଲ ହାଧନ
ଚକା ପ୍ରସ୍ତର ଘଟଣ ।

କି ନାରୀକେଳ ଶ୍ରୀ ଫଳ ତାଳ ମାତୁଳଙ୍ଗ, ପୀୟୁଷ
କୋଷ କି ମେରୁ ସରି ଗୁରୁତୁଙ୍ଗ (୩୪-୭୨)

ଏ ଧରଣର ଉପମାନର ସମ୍ଭାର କେବଳ କବି ହୃଦୟର ଅତୃପ୍ତି ବ୍ୟକ୍ତ କରେ । କବି ଗୋଟିଏ ବସ୍ତୁର ପ୍ରକାଶ ପାଇଁ ଉପମାନ ପରେ ଉପମାନ ପ୍ରୟୋଗ କରିବା ଅର୍ଥ କୌଣସି ଗୋଟିକରେ ତାର ହୃଦୟଧୃତ ଉପମେୟର ଯଥାର୍ଥ ପ୍ରକାଶ ହୋଇ ପାରି ନ ଥିବା ମନେକରେ । କିନ୍ତୁ ଏ ଧରଣର ପ୍ରୟୋଗ କୌଣସି ବିଶେଷ ଉଦ୍ଦେଶ୍ୟ ସାଧନ କରିପାରେ ନାହିଁ

ସ୍ଥଳ ବିଶେଷରେ ରୋମାବଳୀ ସହିତ କୁଚର ବର୍ଣ୍ଣନା ପାଠକୁ ବିମୋହିତ କରେ ।

ବକ୍ଷୋଜ ତଳେ ରୋମାଳୀ ସାଧୁ,
ବିଜନସ୍ଥାନ ହ୍ରଦ ବିଶୁଦ୍ଧ
ବାହୁଡେ ଶରଘା ଶରଧାରେ ଉରେ ସଂଚିରମ ପ୍ରେମ
ମଧୂସେ ବୈଦେହୀ (ବୈ ବି ୩୫-୩୫)

ସ୍ତନ ମଧୁର ମଧୁକୋଷକୁ ଆଣି,
ସଂଚିଲେ କି ରୋମାଳୀ ଶରଘା ଶ୍ରେଣୀ (ଲ-ବ ୧୪-୩୦)

କେତେକ ବିଶିଷ୍ଟ ଉପମାନ କବିଙ୍କ ପ୍ରୟୋଗ ଚତୁର୍ଯରେ ହୃଦୟାବେଦକ ହୋଇପାରିଛି ।

ପୟୋଧରେ ବଶ ଚାତକ ପଗୟେ
ପୟୋଧରେ ବଶ ଚିତ୍ତ ।
ଘନରସ ଘନରସ ଦୁଇଠାରେ ହେବାରୁ ପରିପୂରିତ
(ର ଲେ ୧୧-୧୬)

ଏଠାରେ ସ୍ତନକୁ ମେଘ ଓ ଚିତ୍ତକୁ ଚାତକ ରୂପରେ ଅତି ହୃଦ୍ୟ ରୀତିରେ ପରିବେଷଣ କରାଯାଇଛି ।

ଯୁବତୀ ନାରୀର ଅଳସ ଭଙ୍ଗିମାରେ
ସ୍ତନର ଔନ୍ନତ୍ୟ କଳସ ରୂପ ନେଇଛି,
ଭଙ୍ଗୁ ଅଳସକୁ କୁଚ କଳସକୁ ମହାଯୋଗ ପ୍ରାୟେ
ଦେଖିବାର,(ର-ହା ୮-୧୮)

ଧରୁ ଅଶୋକ ଡାଳକୁ ଅଳସ ଭଙ୍ଗୁ ଦିଶିଲା ସେ
କୁଚ କଳସ, (ର-ଲେ ୫-୧୦)

ଉଠି ଭଙ୍ଗନ୍ତେ ଅଳସ କି ଶୋଭ କୁଚ କଳସ
(ଲ-ବ ୧୧-୨୬)

ଫଗୁ ରଙ୍ଗ ମିଶ୍ରିତ କୁଚ—

କାହା କୁଚ ଫଗୁ ସଙ୍ଗରୁ ସୁମଞ୍ଜ
ଏହି ପାଞ୍ଚ ହୋଏ ମାନସ
ହୃଦୟ ସରୋବର ମଧ୍ୟେ ଉଦୟ କୋକନଦ କଢି
ଯୁଗ୍ମ ସେ, (ଲ ବ ୫-୨୪)

ଏଠାରେ ସ୍ତନକୁ ରକ୍ତପଦ୍ମ କହିବା ତତ୍ପର୍ଯପୂର୍ଣ୍ଣ ମାତୁଳଙ୍ଗ ଟଗ) ଉପମାଟି ଅତି ହୃଦ୍ୟ ରୀତିରେ ପ୍ରକାଶିତ ।

ବିରହଜ୍ୱର ଅରୁଚି ନାଶେ ପାଚି ଆସଇ କି ମାତୁଳଙ୍ଗ
(କୋ-ବ୍ର ସୁ ୩୦-୧୦

ନିମ୍ନ ପଂକ୍ତିରେ ସର୍ବଯମକରେ ସ୍ତନକୁ ନାରିକେଳ ସହିତ ସମାନ କରାଯାଇଛି ।

ବାସରେ ଆଚ୍ଛନ୍ନ ଶୋଭ ତୁଙ୍ଗ ପୟୋଧରେ
ବାସରେ ଆଚ୍ଛନ୍ନ ଶୋଭ ତୁଙ୍ଗ ପୟୋଧରେ
(ବୈ ବି ୭-୩୨)

କବି ଉପେନ୍ଦ୍ର ଗର୍ଭବତୀ ନାରୀର ସ୍ତନ ଶୋଭକୁ ଅତି ହୃଦ୍ୟ ରୀତିରେ ବ୍ୟକ୍ତ କରିଛନ୍ତି । ଅବଶ୍ୟ ଏ ଧରଣର ବର୍ଣ୍ଣନା କାଳିଦାସଙ୍କ କାବ୍ୟରେ ମଧ୍ୟ ଉପଲବ୍ଧ । ୪ ।

ସମଗ୍ରେ କୁଚଗ୍ରେ ଶ୍ୟାମଳତା ଆଶ୍ଳେଷକଲେ

ସଙ୍ଗ ହେଲେ ଭଙ୍ଗଯୁଗ୍ମ ପଦ୍ମକଢି ତୁଲେ,
(ସୁ ପ ୧-୧୪)

ହରଧର ଶୃଙ୍ଗେ ଜଳଧର ପରା ଶୋହି ।
(ଲ ବ ୨-୪୦)

ଏଥିରେ ଗର୍ଭବତୀ ନାରୀର କୁଚଗ୍ରର ଶ୍ୟାମ ଳତାକୁ ଭୃଙ୍ଗ ଓ ଜଳଧର ଶବ୍ଦରେ ତଥା ସ୍ତନକୁ ପଦ୍ମକଳି ଓ କୈଳାସ ରୂପରେ ଉପସ୍ଥାପନ କରି ଔପମିକ ସାମ୍ୟ ପ୍ରଦର୍ଶନ କରିଛନ୍ତି ।

କବି ଉପେନ୍ଦ୍ର ସୁନ୍ଦରୀ ନାରୀକୁ ଚନ୍ଦ୍ରମୁଖୀ ସାରସାକ୍ଷୀ ପ୍ରଭୃତି ସମ୍ବୋଧନ କରି ତରୁଣୀଙ୍କ ବିଶିଷ୍ଟ ଅଙ୍ଗର ସୁଷମା କୁ ସଂକେତ ଦେଇଛନ୍ତି । ସେହିପରି ସ୍ତବକ ସ୍ତନା (କୋ ବ୍ର ସୁ ·୨୨ ୧୯) (ପ୍ରେ ସୁ ୧୦ ୧୫) (ଲ ବ ୩୬-୬ କରୀକୁମ୍ଭସ୍ତନା ( ର-ହ ୧୧-୩ ) ପୀନସ୍ତନା (ଲ-ବ ୫ ୧୦) କଦରୀସ୍ତନା (ଲ-୫) ଆଦି ସମ୍ବୋଧନରେ ଯୁବତୀ ରମଣୀର ଏହି ବିଶିଷ୍ଟ ଅଙ୍ଗର ସୁଷମା ପ୍ରତି ଇଙ୍ଗିତ ଦେଇଛନ୍ତି ।

କବି ଉପେନ୍ଦ୍ର ନାରୀର ବିଶିଷ୍ଟ ଅଙ୍ଗର ସୌନ୍ଦର୍ଯ୍ୟ ପ୍ରସ୍ଫୁଟନ ପାଇଁ ପ୍ରକୃତି ଜଗତରୁ ଯେପରି ବିଶିଷ୍ଟ ଉପମାନ ଆହରଣ କରିଛନ୍ତି, ସେହିପରି ପ୍ରକୃତିର ମୁଗ୍‌ଧମଧୁର ରୂପ ଚିତ୍ରଣ ପାଇଁ ନାରୀର ବିଶିଷ୍ଟ ଅଙ୍ଗକୁ ଉପମାନ ରୂପରେ ଗ୍ରହଣ କରିଛନ୍ତି ।

ସ୍ତନକୁ ପର୍ବତ ସହିତ ତୁଳନା କଲା ପରି ପର୍ବତକୁ ପୃଥିବୀ ରମଣୀର ସ୍ତନ ରୂପେ ବ୍ୟକ୍ତ କରିଛନ୍ତି ଏ ସ୍ଥଳରେ କାଳିଦାସଙ୍କ ବର୍ଣ୍ଣନା ସ୍ମରଣୀୟ । ୫ ।

ଅବନୀ ଅଙ୍ଗନା ଏକ ସ୍ତନ ପରାୟେ, ବିପୁଳ ଭବରୁ
କରି ସେ ଶୋଭପାଏ (ର ହ ୭-୭)

ଦିଶେ ମେରୁପରି, ମହି ମହିଳାର ଉଚ୍ଚସ୍ତନପରି
(ଲ-ବ ୩୯-୩୨)

ସତ ଅବନୀ ବନିତାର ସ୍ତନ ଶୋଭପାଉଛି ।

ସୁତୁଙ୍ଗ କଠିନ ଦୁର୍ଲଭ ତିନି ଗୁଣ ବହିଛି ।
( ସୁ ପ ୫-୩ )

ସ୍ତବକକୁ ସ୍ତନରୂପେ ଚିତ୍ରଣ —

ନୂତନ ସ୍ତବକ ସ୍ତନ ଅଙ୍କୁରିଲା ପିକବାଣୀ କି
ମଧୁର ( ଲ ବ ୨୫-୨ )

ତୁମ୍ବୀର ଚିତ୍ରଣ —

ବଢ଼ିବା ତୁମ୍ବୀକି ଉରରେ ରଖି, ବକ୍ଷୋରୁହ ହେଲା
ଉବରେ ସୁଖୀ ( ବୈ ବି ୨୧-୩୦ )

ଚକ୍ରବାକ —

ବୁଡ଼ ଉଠଇ ଚକ୍ରବସି, ବାସ ଖସି କି ସ୍ତନଦିଶି ।
( ବୈ ବି ୨୨-୫୭ )

ଏତଦ୍ ବ୍ୟତୀତ ରାଜ ମହଲରେ ସ୍ତନକାଠିନ୍ୟ ବୃଦ୍ଧି ପାଇଁ ଯେଉଁସବୁ ପ୍ରାକୃତିକ ଉପାୟ ଅବଲମ୍ବନ କରୁଥିଲେ, କବି ତାହା ମଧ୍ୟ ଲାବଣ୍ୟବତୀ କାବ୍ୟରେ ପ୍ରକାଶ କରିବାକୁ ଭୁଲିନାହାଁନ୍ତି ।

ତିଳ ତୈଳ ଡାଳିମ୍ବର ରସ ଯୁକ୍ତ ତହିଁକର,

କାର୍ପାସ ତୁଳାରେ ଦେବ, ଉରଜ କଠିନ ହୋଇବ,
(୨୯-୩୫)

କବି ଉପେନ୍ଦ୍ର ଉକ୍ତ ସାତଗୋଟି ବିଶିଷ୍ଟ ବାକ୍ୟରେ ସ୍ତନର ସୌନ୍ଦର୍ଯ୍ୟ ପ୍ରକାଶ ପାଇଁ ତମ୍ବୁ, ମର୍ଦ୍ଦଳ, ଆମାରୀ, ପଶାସାର, ପେଟୀ, ଛତା, ନୌକା ପ୍ରଭୃତି ବହୁ ଉପମାନ ପ୍ରୟୋଗ କରିଛନ୍ତି । କେତେକ ଉପମାନ ପାରମ୍ପରିକ ହେଲେ ମଧ୍ୟ କବିଙ୍କ ପ୍ରୟୋଗ କୌଶଳରେ ମନ ମୁଗ୍‌ଧକର ହୋଇଛନ୍ତି । କିନ୍ତୁ ସାମଗ୍ରୀକ ଭବେ ଉପମାନ ଗୁଡକୁ ଅନୁଧ୍ୟାନ କଲେ ସ୍ଥଳବିଶେଷରେ ଅତିରଞ୍ଜନ ଓ ଆକାରସାମ୍ୟ ପ୍ରତି କବିଙ୍କ ଧ୍ୟାନ ଥିବା ମନେ ହୁଏ । କିନ୍ତୁ ଯୁବତୀ ନାରୀର ସ୍ତନ ପୁରୁଷ ମନରେ ଯେଉଁ ଉଦ୍ଦୀପନା ଓ ଶରୀରରେ ଶିହରଣ ସୃଷ୍ଟିକରେ, ତାହା ଅଧିକାଂଶ ଉପମାନରେ ଫୁଟି ପାରିନାହିଁ ।

ପାଦଟୀକା —

୧ । ବେଣୀ ଧମ୍ମିଲ୍ଲ ସୀମନ୍ତ ଭଲ ଶ୍ରବଣ ନାସିକା,
କପୋଳାଧର ନେତ୍ରଭ୍ରୂ କଟାକ୍ଷ ରଦ କନ୍ଦଗଃ,
ଗଣ୍ଡ ବାହୂ କରେରେଜ ନାଭି ମଧ୍ୟ ବଳିତ୍ରୟଂ,
ରୋମାଣୀ ଶ୍ରୋଣୀ ଜଂ ଘୋରୁ ପାଦ ଯୁଗ୍ମ ନମକ୍ରମାଃ, ( ସା-ଦର୍ପଣ-ଟୀକା )

୨ । ବୋଲେ ଦଶାସ୍ୟ ତୁ କବି, ବକ୍ଷୋରୁହେ ମେରୁ ଛବି ( ବୈ-ବି-୪୧-୯ )

୩ । ଗିରିରେ ବ୍ରତତୀ ଜାତ ବୋଲନ୍ତି ସମସ୍ତେ, ବ୍ରତତୀରେ ଗିରିଜାତ କଲ ଏ ସାକ୍ଷାତେ,
( ବିଷ୍ଣୁଦାସ·ପ୍ରେମଲୋଚନ -ଚତୁର୍ଥଛନ୍ଦ )

୪ । ଦିନେଷୁ ଗଚ୍ଛସ୍ତୁ ନିତାନ୍ତ ପୀବରଂ ତଦୀୟମା ନୀଳମୁଖ ସ୍ତନଦ୍ୱୟଂ
ତିରସ୍କକାର ଭ୍ରମର ଭିଳନୟୋଃ ସୁଜାତୟୋଃ ପଙ୍କଜ କୋଷୟୋଃ ଶ୍ରିୟସ, (ରଘୁବଂଶ ୩-୮)

୫ । ମଧ୍ୟେ ଶ୍ୟାମଃ ସ୍ତନ ଇବ ଭୁବ ଶେଷ ବିସ୍ତାର ପାଣ୍ଡୁ, ( ପୂର୍ବମେଘ-୧୮ ଶ୍ଳୋକ )



# ଲାବଣ୍ୟବତୀ

* କବି ପରିଡା

ସିଂହଳ ଦ୍ୱୀପୁ ଚନ୍ଦ୍ରଭାନୁ ଯେ ଆଣିଥିଲେ ଯେବେ
ବୋଇତେ ତୁମକୁ ରୂପସୀ ଲାବଣ୍ୟବତୀ,
ହର୍ଷ ପୁଲକେ ମାତି ।
ଆକାଶରେ ଥିଲା ଜହ୍ନ,
ତୁମରି ମନରେ ଜାଗିଥିଲା ଧୀରେ କେତେ ଭାବନାର
କେତେ ସପନର ଆଶାଭରା ଶୁଭଚିହ୍ନ । ୬ ।

ମହା ସାଗରରେ ବିଲୋଳ ଲହରୀ ଉପରେ ପତିତ
ଜୋଛନାର ମଧୁଧାର,
ରଚିଥିଲା ପର ସୁଶ୍ରୀସୁଖଦ – କାର ।
ନଭ – ଉଦ୍ୟାନେ ରହିଁଥିଲେ ତାର – ଫୁଲ ············
ଆଶାୟୀ ନୟନେ ରହିଁଥିଲ ପୁଣି ତୁମେ
ସେହି, ମୁଗ୍‌ଧ ମଧୁର ଯାମେ । ୧୨ ।

ପିନ୍ଧି ଯତନେ ବ୍ରହ୍ମପୁରର କ୍ଷୀରେଦରୀମଠା
ଦେହକୁ ମାନିଲା ପରି,
ପଣତ କାନିରେ ସୁନା ରୂପା ଜରି
ଉଠୁଥିଲା ସତେ ଝଲି,
ଶୋହୁଥିଲା ପୁଣି କଟକର ରୂପୁ ଅଳଙ୍କାର ଓ
କବରୀ ଉପରେ
ରୂପା – ଚମ୍ପକ କଳି,
ଉଠୁଥିଲା ସତେ ଝଲି । ୨୦ ।

କାଞ୍ଚି ନଗର ନୃପ ନନ୍ଦନ ଚନ୍ଦ୍ରଭାନୁର
ରୂପ ଓ ଗୁଣରେ ବିମୋହିତ ହୋଇ
ଦେଉଥିଲ ଯହିଁ ଚକିତା ହରିଣୀ ନେତ୍ରେ,
ସମ୍ମୋହନର ପୁଷ୍ପ ଶାୟକ ବାଜି ଯାଉଥାଏ ·······
କୁମାର କୋମଳ ଗାତ୍ରେ । ୨୪ ।

ନମ୍ର ଆନନେ ରହି କେବେ ଅ'ବା
ରଙ୍ଗ ଅଧରେ ଖେଳାଇ ତରଳ ହାସ,
ମୋଦ ମୂର୍ଚ୍ଛିତେ ତନ୍ମୟ ହୋଇ
ଅଲେଖା ଗୀତରୁ ପଦେ ଅଧେ ଗାଇ
ସାଗର ଗୀତିରେ ତାଳ ଦେଇ ଦେଇ
ରଚୁଥିଲ ମନେ ମିଳନ ମଧୁର ରାସ । ୩୧ ।

ଭଞ୍ଜ କବିର କଳ୍ପ - ଜଗତେ ତୁମେହିଁ ରୂପସୀ !
ପାଦପାଡି ଆସ ସୁଖ ସମ୍ପଦ ଧରି,
ତୁମରି ତାରୁଣ୍ୟ ରୂପ ସମ୍ଭାରେ କେହି ଅପସରୀ
ହୋଇ ନାହିଁ କେବେ ସରି । ୩୬ ।

ତୁମରି ମନ୍ଦିରେ ଜାଗିଅଛି ଯେବେ ବିରହ କାମୋଦୀରାଗ,
ସ୍ୱପ୍ନରେ ତୁମେ ପାଇଛ କେବଳ
ଦିବ୍ୟ ତରୁଣ ଅଙ୍ଗ ପରଶ ଦାଗ ।
ମୁଗ୍ଧା ନାୟିକା ତୁମେ,
ତୁମ ଭଳିକେହି ରୂପସୀ ନାହାନ୍ତି
ଭଞ୍ଜଯୁଗୀୟ କାବ୍ୟ – କବିତା - ଭୂମେ । ୪୧ ।

ସିଂହଳ ରାଜ କନ୍ୟା,
ତୁମରି ଲାବଣ୍ୟ ବର୍ଣ୍ଣବିଭେରେ
ଭଞ୍ଜ କବିର ଲେଖନୀ ମୁନରେ
ସୃଷ୍ଟି ହୋଇଛି ·········
କେତେ ଯେ ଲଳିତ ଶବ୍ଦ ଧ୍ୱନିରେ
ରୂପକ ଯମକ ରାଗ ରାଗିଣୀରେ
ରମଣୀୟ ମଧୁବନ୍ୟା । ୪୮ ।

ହୃଦ ମନ୍ଦରେ ଥାପିଛୁ ତୁମେହିଁ ଏକ ପତି - ଦେବ
ଜାନକୀ ଭବନା ନେଇ,
ଚନ୍ଦ୍ରଭନୁର ମଙ୍ଗଳଇଛି ସହିଛୁ କଷଣ
କାବେରୀ କୂଳରେ ଦେବ ଅଭିଶାପ ପାଇ । ୫୨ ।

ସେ ଦିନର କଥା କଳ୍ପନାତୁଲ୍ୟ ଭବିପାରେ କେହି
ଦେଖି ଆଧୁନିକ ସମାଜର ରୀତିନୀତି,
ବାସ୍ତବତାର. ପୀରତି ହଜିଛି,
କେହିବା ଖୋଜୁଛି ସ୍ୱାର୍ଥ - ମହକ ନିତି । ୫୬ ।

ବର୍ତ୍ତମାନର ସଭ୍ୟ ଯୁଗରେ ତୁମ ମନୋଭବ
ଅମଳିନ ଅଛି ମାଟି ମଣିଷର ମନେ,
ତୁମରି ପ୍ରତିମା ବିଦ୍ୟମାନ ଯେ —
ଭଞ୍ଜ କବିର ଭାରତୀ - କୁଞ୍ଜ - ବନେ । ୬୦ ।

ସିଂହଳ ରାଜ କନ୍ୟା,
କୋବିଦ ଜନର ଆଶାୟୀ ମନକୁ
କାବ୍ୟର ସାର ମଧୁର ଚଖାଇ
ଭଞ୍ଜ କୃତିର କୀର୍ତ୍ତି ନିଳୟ
ହୋଇଅଛ ତୁମେ ଧନ୍ୟା । ୬୪ ।





# 'ଲାବଣ୍ୟ ବତୀର ଭାଷା'

● ଦାଶରଥି ଦାସ
ବିଭାଗୀୟ ମୁଖ୍ୟ ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,
ବ୍ରହ୍ମପୁର - ୭୬୦୦୦୭

କବିତା ଭାଷାଶିଳ୍ପ । କିନ୍ତୁ କବିତାରେ ଭାଷାର ନର୍ମ (norm) ନ ଭାଙ୍ଗିଲେ ନ ଚଳେ । ଚେକ୍ ଭାଷାବିଜ୍ଞାନୀ ଇୟାନ ମୁକାରୋଭସ୍କି (Ian Mukarovsky) କହନ୍ତି କବିତାରେ "the intentional violation of the norm of the standard,' (standard language & poetic language) ଅନାୟସ ଲକ୍ଷ୍ୟ । କବିତାର ଭାଷା ଭାଷାର ନର୍ମଠାରୁ ଦୂରତ୍ୱ ରକ୍ଷାକରେ । ସୌନ୍ଦର୍ଯ୍ୟ ସୃଷ୍ଟିର କେତେକ ବିଶେଷ ପ୍ରକରଣ ଉପଲକ୍ଷେ ତାହାଠାରୁ ଅପସରି ଯାଏ । ଷ୍ଟାଣ୍ଡାର୍ଡ ଭାଷା ହିଁ ସେହିନର୍ମ କବିତାର ଭାଷା ଷ୍ଟାଣ୍ଡାର୍ଡ ଭାଷାର ନିୟମ ଶୃଙ୍ଖଳା ଭାଙ୍ଗିଦିଏ । ତେବେ ମନେ ରଖିବାକୁ ହୁଏ ଯେ, କୌଣସି କବି ସଚେତନ ଭାବରେ ଭାଷାର ନର୍ମକୁ ଭାଙ୍ଗିବାକୁ ଚାହିଁବାରୁ କବିତା ସୃଷ୍ଟି ହୁଏ ନାହିଁ । କବିତା କବିତା ହୋଇ ଉଠିବ ବୋଲି ନିଜର ପ୍ରୟୋଜନ ବଶତଃ ଉଦ୍ଦେଶ୍ୟ ମୂଳକ ଭାବରେ ଭାଷାର ନର୍ମଠାରୁ ଅପସରି ଯାଇଥାଏ । ମାତ୍ର ଭାଷା ବିଜ୍ଞାନୀମାନେ ଏହି ଅପସରି ଯିବାର ଭଙ୍ଗିକୁ ବିଶ୍ଳେଷଣ କରିଥାନ୍ତି । ଏହି ବିଶ୍ଳେଷଣର ସୀମା ଅଛି । ଭାଷା କିପରି କବିତାର ଭାଷା ହୋଇ ଉଠେ; ତାହା ପ୍ରାୟ ସେମାନେ ଜାଣିବାକୁ ଚାହାନ୍ତି ନାହିଁ । କବିତାର ଭାଷା ସ୍ୱରୂପ ଲକ୍ଷଣ କ'ଣ, ତାହା ମଧ୍ୟ ସେମାନେ ଖୋଜନ୍ତି ନାହିଁ, ଭାଷା କି ଭାବରେ ବ୍ୟବହୃତ ହୋଇଛି ତାହାହିଁ ଅନ୍ୱେଷଣ କରିବା ଯଥେଷ୍ଟ । ସେମାନଙ୍କ ପଦ୍ଧତି ଅନୁସରଣ କରି 'ଲାବଣ୍ୟବତୀ'ର ଭାଷାକୁ ବିଶ୍ଳେଷଣ କରାଯାଇ ପାରେ । ସେଥିରେ କବି ଉପେନ୍ଦ୍ର ସମସାମୟିକ ଷ୍ଟାଣ୍ଡାର୍ଡ ଭାଷାର ନର୍ମଠାରୁ କିପରି ଅପସରି ଆସିଛନ୍ତି ତାହାର ବିଶେଷ ଧରଣଟିକୁ ଅନୁଧ୍ୟାନ କରାଯାଇପାରେ । ଏହି ପ୍ରବନ୍ଧଟିର ଉଦ୍ୟମ ବଡ ବିନୀତ । କବିତା ସବୁ ଦିନେ କବିତା । ସମସାମୟିକ ଭାଷାରେ କବିତା ଲେଖାଯାଇ ପାରେ ନାହିଁ ତାହା ନେଇ ଅବଶ୍ୟ ମତାନୈକ୍ୟ ଅଛି । ଟମାସ ଗ୍ରେ ସମକାଳୀନ ଭାଷାଠାରୁ କବିତାର ଭାଷାକୁ ସଂପୂର୍ଣ୍ଣ ଭାବେ ଅଲଗା ବୋଲି ଚିହ୍ନିତ କରିବାକୁ ଚାହିଁଛନ୍ତି । (The language of the age is never the language of poetry) ତେବେ କବିତା ଯେଉଁ ଷ୍ଟାଣ୍ଡାର୍ଡ ଭାଷାରେ ଲେଖାଯାଏ ତାହାର ନର୍ମକୁ ଅବଶ୍ୟ ଭାଙ୍ଗେ, ଭାଙ୍ଗିବାର ଭଙ୍ଗିଟି ସବୁଠି ସବୁ କାଳେ ସମାନ ।।

କବିତାର ଭାଷା ଆଲୋଚନା ବେଳେ ଭାଷାତତ୍ତ୍ୱର ସୂତ୍ରକୁ ସ୍ମରଣ ରଖିବାକୁ ହୁଏ ।। ଭାଷା ଦୁଇ ପ୍ରକାର । ଗୋଷ୍ଠୀ ଭାଷା (Sociolect) ଓ ବ୍ୟକ୍ତି ଭାଷା (Idiolect) । ଗୋଷ୍ଠୀ ଭାଷାମାନେ ଗୋଟିଏ ଶ୍ରେଣୀର ସାମାଜିକ ଗୋଷ୍ଠୀଭୁକ୍ତ ବ୍ୟକ୍ତିମାନଙ୍କର ଉପଭାଷା ଉପେନ୍ଦ୍ରଙ୍କ ସମକାଳୀନ କବିମାନଙ୍କର ଗୋଟିଏ ଗୋଷ୍ଠୀଭାଷା ଥିଲା, ଶିକ୍ଷା ସଂସ୍କୃତି

ତଥା କାବ୍ୟଚର୍ଚ୍ଚା ଫଳରେ ସେମାନଙ୍କର ଉପଭାଷା ସାଧାରଣ ଓଡ଼ିଆଙ୍କ ଭାଷାଠାରୁ ପୃଥକ ହୋଇଥିବ ନିଶ୍ଚୟ ।। ସେହିପରି ତାଙ୍କ ସମସାମୟିକ ରାଜପୁତ୍ର ମାନଙ୍କର ଗୋଟିଏ ଗୋଷ୍ଠୀ ଭାଷା ଅବଶ୍ୟ ଥିବ ।। ଅଧିକନ୍ତୁ ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ବ୍ୟକ୍ତିଭାଷା ଥିବ; ଯେଉଁ ଭାଷା ଅନ୍ୟ କବିଙ୍କ ଭାଷାଠାରୁ କି ଅନ୍ୟ ରାଜପୁତ୍ରଙ୍କ ଭାଷା ଠାରୁ ଭିନ୍ନ ହୋଇଥିବ । କବିତାର ଭାଷା ବିଶ୍ଳେଷଣ କରିବାକୁ ହେଲେ ଏହି ବ୍ୟକ୍ତିଭାଷାର ଆଚରଣ ବା ପ୍ରକରଣ ପ୍ରକ୍ରିୟା ହିଁ କବିତାର ଭାଷାକୁ ଚିହ୍ନାଇଦିଏ । ସେଥିପାଇଁ କବିତାର ଭାଷା ସବୁବେଳେ ସମକାଳୀନ ମୌଖିକ ଭାଷା ଠାରୁ ଭିନ୍ନ ।। ଆଧୁନିକ କବିଗଣ ବେଣୁ ବେଣୁ ଆଦି ସୁକଳିତ କାବ୍ୟିକ ଶବ୍ଦ ଯଥା ସମ୍ଭବ ପରିହାର କଲେ ମଧ୍ୟ କବିତାର ଭାଷାପୁ ମୌଖିକ ଭାଷା ସହିତ ସର୍ବାଙ୍ଗୀନ ଐକ୍ୟଦେଇ ପାରନ୍ତି ନାହିଁ ।। ଭାଷାର ଯେଉଁସବୁ ସ୍ତର ଅଛି, ସେହିସବୁ ସ୍ତରରେ କବିତାର ଭାଷା ମୌଖିକ ଷ୍ଟାଣ୍ଡାର୍ଡ ଭାଷାଠାରୁ ଦୂରେଇ ଯିବାକୁ ଚାହିଁଥାଏ ।। 'ଲାବଣ୍ୟବତୀର' ଭାଷା ବ୍ୟତିକ୍ରମ ନୁହେଁ । ଲାବଣ୍ୟବତୀର ଭାଷା ପ୍ରକୃତରେ କବି ଉପେନ୍ଦ୍ରଙ୍କ ବ୍ୟକ୍ତିଭାଷା ବା ଉପଭାଷା ତାହା ତାଙ୍କ ସମକାଳୀନ ମୌଖିକ ଭାଷାଠାରୁ ଭିନ୍ନ ନିଶ୍ଚୟ ।। ଲାବଣ୍ୟବତୀର ଭାଷାର ପ୍ରକରଣ ପ୍ରକ୍ରିୟାରୁ ସେହି ଭିନ୍ନତା ଅନୁସଂଧେୟ ।।

### ଧ୍ୱନି :—

ପ୍ରଥମେ ଧ୍ୱନି ( Sound ସ୍ତର ବିଚାର୍ଯ୍ୟ । କବିତା ମୌଖିକ ଭାଷାର ଧ୍ୱନି ବିନ୍ୟାସକୁ ଅଦଳବଦଳ କରିପାରେ ।। ଉପେନ୍ଦ୍ରଙ୍କ କାଳରେ ଅବଶ୍ୟ ମଧୁର କୋମଳ ଧ୍ୱନି ବିନ୍ୟାସର ଗୁରୁତ୍ୱ ଥିଲା । ପଦଲାଳିତ୍ୟ ଥିଲା ପ୍ରଶଂସାର୍ହ । ଧ୍ୱନିର ଅଭିଘାତରେ ସ୍ୱତଃ କବିତାର ଭାଷା ସ୍ୱତନ୍ତ୍ର ହୋଇ ଉଠେ ।। ଧ୍ୱନିର ଆନୁପ୍ରାସିକ ସଂଗୀତମୟ ବିନ୍ୟାସ ପ୍ରତି ଉପେନ୍ଦ୍ରଙ୍କ ପ୍ରବଣତା ଅନାୟସ ଲକ୍ଷ୍ୟ ।। ଉଦାହରଣ ସ୍ୱରୂପ ଯଥା ଦେଖି "ନବ ଜାଳିକା ବକାଳିକା ମାଳିକା ଆଳି କାଳିକା କାନ୍ତ ସ୍ମରି" ଇତ୍ୟାଦି ।। କିନ୍ତୁ ମୁଁହରେ ଭାଷାଠାରୁ କବିତାର ଭାଷାକୁ ଯାହା ପୃଥକ କରିଥାଏ ତାହା ଛନ୍ଦ ।। କବିତାର ଅନ୍ତର୍ଲୀନ ପାଟର୍ନ ପାଖରେ ଶବ୍ଦ ବା ଧ୍ୱନିକୁ ସମର୍ପି ନଦେଲେ ଛନ୍ଦ ନିର୍ବାହ କରି ହୁଏ ନାହିଁ ।। ଛନ୍ଦର ଅନୁରୋଧରୁ କବିତାର ଭାଷା ମୌଖିକ ଭାଷାର ଧ୍ୱନିକୁ ଅନେକ ପ୍ରକ୍ରିୟାରେ ନିୟନ୍ତ୍ରଣ କରିଥାଏ ।।

## ( କ ) ଲୋପ ( *Deletion* )

ମେଳ କି ଛନ୍ଦ ଦୃଷ୍ଟିରୁ କବିତାରେ ଅନେକ ଶବ୍ଦର ଧ୍ୱନିଗତ ଦେହେର ଅକ୍ଷୁର୍ଣ୍ଣ ରହିପାରେ ନାହିଁ । ସେଥିରୁ ଗୋଟିଏ ଦୁଇଟି ଧ୍ୱନି ଖସି ପଡ଼ିବା ଆଦୌ ଅସ୍ୱାଭାବିକ ନୁହେଁ ।। ଯେମିତି over ହୋଇଯାଏ O'er Lord ହୋଇଯାଏ Lor' ।। ଲାବଣ୍ୟବତୀରେ 'ବିଷୟକୁ' ହୋଇଛି ବିଷେ, କୁଟିଳତା—କୁଟିଳ କୋମଳତା—କୋମଳ, ଅଗୁରୁ—ଅଗ୍ର, ତୋରଣ—ତ୍ରୋଣ, କୁଟିଳତା ସ୍ଥାନରେ କୁଟିଳ ଓ ଆବିଳତା ସ୍ଥାନରେ ଆବିଳ ଶବ୍ଦ ଦେଖି ଅନେକ ଉପେନ୍ଦ୍ରଙ୍କ ବ୍ୟାକରଣ ଜ୍ଞାନର ସଂଦେହ ପୋଷଣ କରନ୍ତି ।। କିନ୍ତୁ ସେ ବିଶେଷଣରୁ ବିଶେଷ୍ୟ ପଦ ଗଢ଼ିଛନ୍ତି ଯଥେଷ୍ଟ "ବିକାର ନ ଥିଲେ ବ୍ୟାକୁଳତା ତାଙ୍କ ଅଛି ।" କବିତାର ଭାଷା ସମ୍ବନ୍ଧରେ ଅଜ୍ଞତା ହୁଏତ ଏପରି ମିଥ୍ୟା ଦୋଷାରୋପର କାରଣ ହୋଇପାରିଥାଏ ।।

## ( ଖ ) ଯୋଗ ( *Addition* )

ଛନ୍ଦ ପ୍ରୟୋଜନରୁ ଗୋଟିଏ ଗୋଟିଏ ଶବ୍ଦ ସହିତ କିଛି ଧ୍ୱନି ବା ସିଲେବଲ୍ ଯୋଗ କରି ତାହାକୁ ଟାଣି ଟିକିଏ ବଢ଼ାଇ ଦିଆଯାଇଥାଏ । ମଲଈ-ମଲଈଟି ନୋହିବଟି-ନୋହିବଟିକି, ଉପେନ୍ଦ୍ର ଅନେକତ୍ର ଛନ୍ଦର ଅନୁରୋଧରୁ ଶବ୍ଦକୁ ଟାଣି ବଢ଼ାଇଛନ୍ତି ।। ଅଁଳା-

ଅଏଁଳାଇ, ସୌଦାମିନୀ-ସଉଦାମିନୀ । ତାଲିକା ଦୀର୍ଘ କରିବାକୁ ରହିଁଲେ ଯେ କେହି ଯଉବନୀ, ଅଉଷଧୀଶ; ଅଶକତ, ଅମଳାନ, ଜଉତିଷ, ଶଇଳ, ବ୍ୟକତ, ତଇଳ, ଇତ୍ୟାଦି ଶବ୍ଦ ସଂଗ୍ରହ କରି ପାରନ୍ତି ।

## ( ଗ ) ରୂପାନ୍ତରଣ ( *Alternation* )

ମୁଖ୍ୟତଃ ମେଳ ପକାଇବା ପାଇଁ କବିତାରେ ରୂପାନ୍ତରଣ ପ୍ରକ୍ରିୟାଟିକୁ ବ୍ୟବହାର କରଯାଏ । ଅର୍ଥାତ୍ ପ୍ରଚଳିତ ଉଚ୍ଚାରଣର ହେର୍ ଫେର ଚଳେ । Talcum ସଙ୍ଗେ ମେଳ ପକାଇବାକୁ ଯାଇ ଇଂରଜୀ କବି Welcome କୁ Welcum 'କରିପକାନ୍ତି ।। ରବିନ୍ଦ୍ରମାଳା ସହିତ ' ଆଳେ ' କୁ ସଙ୍ଗତି କରିବାକୁ ଯାଇ ଲେଖନ୍ତି 'ଆଳା' । ରାଧାନାଥ ଆମୋଦ ସହିତ ଉପଧା ମିଳାଇବାକୁ ବୌଦକୁ କହନ୍ତି ' ବୋଦ ' ଉପେନ୍ଦ୍ର ସେହି ସୂତ୍ରରେ ଯେବେ ' ଶ୍ରାନ୍ତ ' ସ୍ଥାନରେ ' ଶ୍ରାନ୍ତ ' ଓ ନିବେଶି ସ୍ଥାନରେ ନିବେଶ ଲେଖନ୍ତି ତେବେ ପ୍ରଣାବ ଅଶୁଦ୍ଧ ହୋଇ ଯାଏ କାହିଁକି ? କବିତାର ଭଷା ସମ୍ବନ୍ଧରେ ଜ୍ଞାନ ଥିଲେ ଉପେନ୍ଦ୍ରଙ୍କ ଶବ୍ଦ ପ୍ରୟୋଗକୁ ଅଶୁଦ୍ଧ ବୋଲି କହି ହେବନାହିଁ ।। ସେମିତି ' ବିଳସିତ ' ସ୍ଥାନରେ ଲେଖିହୁଏ 'ବିଳସିତା' ଭଷା ଦୃଷ୍ଟିରୁ ଭଞ୍ଜ କବିତା କଳଂକ ବିହୀନ ।

## ଘ ) ପୁରୁଣା ଶବ୍ଦ ପ୍ରୟୋଗଃ— ( *Archaism & Provincialism* )

ଉପେନ୍ଦ୍ର ଅନେକ ସମୟରେ ପ୍ରଚଳିତ ସାଧୁ ଶବ୍ଦ ଛାଡ ପୁରୁଣା ଶବ୍ଦ ପ୍ରୟୋଗ କରିଛନ୍ତି । ଜନ ସାଧାରଣଙ୍କ ଭଷା ପରିବର୍ତ୍ତେ ଗଜୁଡ଼ା ବୋଲିକୁ ସ୍ୱୀକାର କରିଛନ୍ତି ।। ଏ କ୍ଷେତ୍ରରେ ଧ୍ୱନିତ ବିବେଚନା ଗୁରୁତ୍ୱ ପୂର୍ଣ୍ଣ ।। ଯୁଗତେ, ମାଂଗଭଙ୍ଗ, କଉଁ,ଉନ୍‌ଗି ଥେଷ୍ଟ, ଲୋଧାରୋଧା, ରଣ୍ଡି, ଅଣିକରି, ଠେଁସି, କିଅ, କାଠିଲଗି ( ଉଠି କୁମାର କାଠିଲଗି ହୁଅଇ ) ଆଡହୋ ଆଡହୋ, ଡାକ । ଉଇଁରିଆ ଆଦି ଅନେକ ଅଦିବ୍ୟ ଶବ୍ଦ କବି ବ୍ୟବହାର କରିଛନ୍ତି ।। ' ଫୁରୁଣା ' ପାସି ଶବ୍ଦଟି ମଧ୍ୟ ଅନୁପ୍ରାସ ନିର୍ବାହ କରିବାକୁ ନିର୍ବାଚିତ । ( ଟେକ କରୁଣା ହେବାପାଇଁ ଅରୁଣା ଧରି ଫୁରୁଣାରେ କିବା (୩୪/୧୯) ) ଅନ୍ୟତ୍ର ଚଉତିଶାର ବର୍ଣ୍ଣ ନିୟମ ସଂରକ୍ଷଣ ପାଇଁ ମଧ୍ୟ ତାହା ବ୍ୟବହୃତ(୩୪/୨୨) ।

## ପଦଗଠନ :—

ଏବେ ପଦ ଗଠନର ସ୍ତର । ବାକ୍ୟରେ ବ୍ୟବହୃତ ଶବ୍ଦକୁ ପଦ କହନ୍ତି ବୋଲି ପିଲାଏ ଜାଣନ୍ତି । ସେହି ଶବ୍ଦ ସହିତ ଅବଶ୍ୟ ବିଭକ୍ତି ପ୍ରତ୍ୟୟ ଓ ଉପସର୍ଗ ଯୋଡ଼ା ଯାଇଥାଏ ।। ବ୍ୟାକରଣରେ ପଦଗଠନର ଯେଉଁ ନିୟମ ଅଛି କବିତାର ଭଷା ତାହା ମାନିବାକୁ ବାଧ୍ୟ ନୁହେଁ, ବରଂ ବ୍ୟତ୍ୟୟ ଘଟାଇ ନୂଆ ପ୍ରୟୋଗ ସୃଷ୍ଟି କରିବାରେ ତାର ଆଗ୍ରହ । " ଲାବଣ୍ୟବତୀ " ରେ ସେହି ବ୍ୟତ୍ୟୟ ବର୍ତ୍ତମାନ ।।

## କେତେକ ପ୍ରୟୋଗ ଦେଖନ୍ତୁ :—

| ବ୍ୟାକରଣ ଗତ ଗଠନ | ଲାବଣ୍ୟବତୀର ଗଠନ |
|---|---|
| ଉମାଠାରୁ | ଉମାରୁ |
| ମନରୁ | ମନୁ |
| ଲଭ ନିମନ୍ତେ | ଲବ୍‌ଧେ |
| ଦର ହସରେ | ଦରହସିତେ |
| ସୁଷମାଦାର | ସୁଷମେ |
| ସ୍ୱେଦ ନିମନ୍ତେ | ସ୍ୱେଦକୁ |

ଅଧିକନ୍ତୁ ମାତ୍ରାରକ୍ଷା ଉଦ୍ଦେଶ୍ୟରେ ଉପେନ୍ଦ୍ର 'ରେ ' ଓ ' ଟେ' ର ଅତିରିକ୍ତ ବ୍ୟବହାର କରିଛନ୍ତି । ବିଶେଷ୍ୟ ଓ ବିଶେଷଣ ପୂର୍ବରେ ପ୍ରାୟ ' ସୁ ' ଉପସର୍ଗଟିକୁ ଲଗାଇଛନ୍ତି । ସେଥିପାଇଁ ଲାବଣ୍ୟବତୀ ରେ ସୁମନୋରମ, ସୁମାଣିକ୍ୟ, ସୁମଙ୍ଗଳ, ସୁବେଣୀ, ସୁସଂଙ୍ଗ, ସୁଚପଳ, ସୁମାତୁଲଂଗ, ସୁଉତ୍ତମାଂଗ, ସୁପରିମଳ, ସୁକଟାକ୍ଷୀ, ସୁବେଣୀ ଓ ସୁରୁରୁ ଆଦି ପଦର ଭିଡ ଦୁର୍ଲକ୍ଷ୍ୟ ନୁହେଁ ।। କବି ଜୀବନର ଭଲ ଦିଗଟି ସବୁବେଳେ ଦେଖନ୍ତି ବୋଧହୁଏ ।। ଛାନ୍ଦ ଓ ମେଳର କାବ୍ୟିକ ପ୍ରୟୋଜନରୁ ସେ ଫୁଲଗୁଡ଼ିକ ସ୍ଥାନରେ ଲେଖନ୍ତି ଫୁଲଚୟ, ବୈଦ୍ୟମାନଙ୍କ ସ୍ଥାନରେ ବୈଦ୍ୟକୁଳ 'ଏହି ସୂତ୍ରରେ ଦଶନଆବଳି, ବିଜୁଳିରାଜି, ଶୋଭାରାଶି, ପରିସ୍ତବିକାଏ ଆଦିପଦ ସୃଷ୍ଟବ୍ୟ ।। ପଦ ଚଳୁ ଗଢୁ ସ୍ଥାନେ ସ୍ଥାନେ ବିଭକ୍ତି ପ୍ରତ୍ୟୟଟିକୁ ଛାଡ଼ଟାକୁ ପଡ଼ଛି । ଯେମିତି ପୂର୍ଣ୍ଣ ରହିତ ପଦ ମିଳାଇବାକୁ " କର୍ଣ୍ଣେ " କବି ଲେଖିଛନ୍ତି ' କର୍ଣ୍ଣ ' ଭଣାଉଛି ରସିକା କର୍ଣ୍ଣ ( ୧୧/୧୭ ) ଏହା ତ୍ରୁଟି ନୁହେଁ, କବିତାର ଚରଣ କୌଶଳ ମାତ୍ର ।।

## ଶବ୍ଦ ନିର୍ବାଚନ —

ଉପେନ୍ଦ୍ରଙ୍କୁ କୁହାଯାଇଛି ଶବ୍ଦବାଜୀକର ।— Upendra Bhanja really Speaking is a mighty literary acrobat, Who has shown his greaty skill in his verbal jugglery (T.S. from Oriya literature vol-II, introduction page x x III ) ଶବ୍ଦ ଇନ୍ଦ୍ରଜାଲ ସୃଷ୍ଟିରେ ସେ ଅଦ୍ଵିତୀୟ ଏହା ନିନ୍ଦାର କଥା ନା ପ୍ରସଂସାର କଥା ? ମଜୁମଦାର ମହୋଦୟ ଯେବେ ନିନ୍ଦା କରିବାକୁ ଚାହିଁଛନ୍ତି ତେବେ ସେ ନିଜେ ନିନ୍ଦିତ ହେବେ ଚିରକାଳ ।। କବି ମାଲର୍ମେ ଶିଳ୍ପୀ ଡେଗାସ୍ କୁ ଯାହା କହିଥିଲେ ତାହା ସେ କେହି ମନେ ପକାଇ ପାରନ୍ତି ।. ଡେଗାସ୍ଙ୍କ ଆଇଡ଼ିଆ ଥିଲା କିନ୍ତୁ ସେ ସନେଟ୍ ଲେଖି ପାରୁ ନ ଥିଲେ ।। ମାର୍ଲାମେଙ୍କୁ କାରଣ ପଚାରିବାରୁ ସେ କହିଥିଲେ, " ଆରେ ବୁଦ୍ଧୁ, ଆଇଡ଼ିଆରେ ସନେଟ୍ ଲେଖାଯାଏ ନାହିଁ, ଲେଖାଯାଏ ଶବ୍ଦରେ ।। ଶବ୍ଦ ହିଁ କବିତା ।। ପ୍ରକୃତରେ କବିତା ଶବ୍ଦ କ୍ରୀଡ଼ା ଛଡ଼ା ଆଉ କ'ଣ ଯେ ? ତରୁଣ କବିଙ୍କୁ ଯେବେ ପଚରାଯାଏ Why do you want to write poetry" ? ଅନେକ କହି ପାରନ୍ତି I have important things, I want to say. " କବି ଅଡେନ କହିବେ ଇଂପରର୍ଟାଣ୍ଟ କଥା କହିବାର ଥିଲେ କବିତା ନ ଲେଖିବା ଭଲ ।। ପ୍ରକୃତରେ ଏପରି ପ୍ରଶ୍ନର ଉତ୍ତର ଦେବାକୁ ଯଥାର୍ଥ କବି ଏ କହନ୍ତେ I like hanging around words listening to what they say (poetry as a (game of know ledge )

ଭଲ କବିଙ୍କୁ ସବୁଦିନେ ଶବ୍ଦ ପ୍ରତି ଶ୍ରଦ୍ଧାଶୀଳ ହେବାକୁ ହୁଏ । ଉପେନ୍ଦ୍ର କେବଳ ଶବ୍ଦାଢ୍ୟ କବି ନୁହନ୍ତି, ଶବ୍ଦପ୍ରତି ପ୍ରୀତି ମଧ୍ୟ । କିନ୍ତୁ ତାଙ୍କ କବିତାରେ ଶବ୍ଦର ଅପବ୍ୟୟ ନ ହୋଇଛି ନୁହେଁ, କାରଣ ଶବ୍ଦ ବଡ଼ ଅଭିମାନୀ ଓ ପ୍ରତିହିଂସା ପରାୟଣ ।। ତାହାପ୍ରତି ଟିକିଏ ଅସାବଧାନ ହେଲେ ଯେ କୌଣସି କବି ପ୍ରତାରିତ ହୋଇଥାନ୍ତି । ଅତ୍ୟୁତ୍ସାହ ବି ନିରପଦ ନୁହେଁ ସମସାମୟିକ ଶ୍ରୋତା ବା ପାଠକଙ୍କ ରୁଚି ଆଦର୍ଶରେ କି ମିଥ୍ୟା ପ୍ରଶଂସାରେ ପ୍ରଣୋଦିତ ହୋଇ କବି ଯେଉଁଠି ଶବ୍ଦ ଐଶ୍ୱର୍ଯ୍ୟ ଦେଖାଇବାକୁ ଚାହିଁଛନ୍ତି ସେଠାରେ ଶବ୍ଦ ପ୍ରସନ୍ନ ହୋଇନାହିଁ । ଶବ୍ଦ ପ୍ରସନ୍ନ ନ ହେଲେ କବିଙ୍କର ସଦ୍‌ଗତି କାହିଁ ? ସୁଖର କଥା ଲାବଣ୍ୟବତୀରେ ଉପେନ୍ଦ୍ର ଶବ୍ଦ ସେମିତି ଅତ୍ୟୁ-ତ୍ସାହ ପ୍ରକାଶ କରି ନାହାନ୍ତି ।। ତେଣୁ କବିଙ୍କର ବିଶେଷ ଆତ୍ମର୍ଯ୍ୟାଦା ଘଟିନାହିଁ ।।

ଶବ୍ଦ ନିର୍ବାଚନ କ୍ଷେତ୍ରରେ ଗୋଟିକୁ ଛାଡ଼ି ଆଉ ଗୋଟିକୁ ଗ୍ରହଣ କରିବାର କଥା ହିଁ ଉଠେ । ଅର୍ଥାତ ଷ୍ଟାଣ୍ଡାର୍ଡ ଭାଷାରେ ବ୍ୟବହୃତ ଶବ୍ଦ ଗୁଡ଼ିକ ପରିବର୍ତ୍ତେ ଅନ୍ୟ ଶବ୍ଦ ଖୋଜି ନେବାକୁ ହୁଏ । ସେଥିପାଇଁ ଯେଉଁ ଶବ୍ଦ ଷ୍ଟାଣ୍ଡାର୍ଡ ଭାଷାରେ ଅପ୍ରଚଳିତ,

ତାହାକୁ ଜାବିଏକ ଶବ୍ଦ କୁହାଯାଇଥାଏ ।। ବାର୍ଦ୍ଧଶ କହିଲେ କବିତା ହେବନାହିଁ, ଲେଖିବାକୁ ହେବ ବେଣୁ, ମାଇକିନିଆ କହିଲେ ଉପେନ୍ଦ୍ର କିଛି ବୁଝିବେ ନାହିଁ, ଲେଖିବେ ଅଙ୍ଗନା କି ବାମା ବା ଗଜଗମନା ।। ଏହି ଦୃଷ୍ଟିରୁ ତାଙ୍କ ଭଣ୍ଡାର କଳନୀୟ ।। ତତ୍ସମ ଶବ୍ଦ ପ୍ରତି ତାଙ୍କର ବିଶେଷ ଆଗ୍ରହ ସମଧିକ ।।

ବିଶେଷ୍ୟ — ସଂହନନ, ମହିଳା, ପାରାବାର, ରଜତ ସ୍ୱୀଚ, ମାର୍ଗଣ, ଦୁର୍ଗ ରୋପ, ସୂର୍ପ, କର୍ବର, ରଥାଂଗ, ନାକ, ଆନନ, ରଜତ, ବିଷ୍ଟର, ନିଚିଳ; ଦୀମୂହ, ଉଡୁପ, ସଂଦୋହ ଇତ୍ୟାଦି ।

ବିଶେଷଣ — ରମ୍ୟ, ଦିବ୍ୟ, ନିର୍ମଳ, ଚଟୁଳ, ଅମ୍ଳାନ ରୁଚିର, ନିବିଡ, ବିଚଳ, ସମବର୍ତ୍ତୁଳ, ନବ, ସାନ୍ଦ୍ର ଜୀର୍ଣ୍ଣ ( ଜୀର୍ଣ୍ଣ ମୁଦୁସୁଲି ) ଇତ୍ୟାଦି ।

କ୍ରିୟା — ଦ୍ରବୁଛି, ସ୍ରବୁଛି, ଘଜିଛି, ଜଡଛି, ଫେଡ, ଉପି, ମୁଦି, ଉଜି ।।

ସମାସ— ଏତଦ୍ ଭିନ୍ନ ହେଉଛି ସମାସ ।। ସବୁଠି ଅନୁପ୍ରାସ ଉପେନ୍ଦ୍ରଙ୍କ ସମାସ ନିର୍ମାଣକୁ ନିୟନ୍ତ୍ରଣ କରିଛି ଦୁଇରୁ ଅଧିକ ପଦରେ ସେ ପ୍ରାୟ ସମାସ ଗଢିନାହାନ୍ତି ଅନୁପ୍ରାସାତ୍ମକ ଅନେକ ସମସ୍ତପଦ ଯେ କେହି ଲକ୍ଷ୍ୟ କରିପାରନ୍ତି । ଯଥା— ଦ୍ରୁଦନଦ, ଅବନୀବନିତା, ମହୀମହୀଳା କାମଯମୁନା, ସ୍ତବକସ୍ତନା, ଦମ୍ଭଉଦଧି, ଅକ୍ଷୀପକ୍ଷୀ, ପଲ୍ୟଂକଅଙ୍କ, ସୁରଜ୍ୱର, ମାଜେର, କୁନ୍ଦସୁନ୍ଦର, ସ୍ତନଜଘନ, ଜଘନଭଦ୍ରାସନ ବଧୂବିଧୁ, ରସାଳସା, ହାସ ଓ କ୍ଷୀର ଜୀବଧବ, ମୃଣାଳମାଳ; ହରିଅରି, ରତିପତି, ରତିରସ ଓ ଅନଙ୍ଗଟେଳଙ୍ଗୀବାଦ୍ୟ ଇତ୍ୟାଦି, ଧ୍ୱନି ସଂଗଠନ ଓ ଅର୍ଥ ସଂଗଠନ ଦୃଷ୍ଟିରୁ ଏଗୁଡକର ସୌନ୍ଦର୍ଯ୍ୟ ନ ବୁଝିଲେ ଭଞ୍ଜ କବିତା ବୁଝିହେବନାହିଁ ।।

କବିତାରେ ନୂଆ ଶବ୍ଦ ଗଢିବାର ସୁଯୋଗ ବର୍ତ୍ତମାନ । ଯାହାକୁ କହନ୍ତି neolgism । ଉପେନ୍ଦ୍ର ନୂଆ ଶବ୍ଦ ଗଢି ନ ଥିଲେ ହେଁ ଚମକ ଆଣିବାକୁ ନୂଆ ଭଙ୍ଗୀରେ ଶବ୍ଦ ପ୍ରୟୋଗ କରିଛନ୍ତି ।। ଶରକୁ କହିବେ ଶରୀର ମଧ୍ୟ ଲୋପ, ମାରକୁ ରମା ବିପରୀତ ।। ସେମିତି ଋଷୀକାଳ ପାଠ ଲେଖିଛନ୍ତି ଫୁଲଧନୁ ସୂନୁ କଲ୍କୀକାଳ । କବିତାରେ ଅବଶ୍ୟ ଏପରି ପ୍ରୟୋଗ ସହଣୀୟ ନୁହେଁ, ଉପେନ୍ଦ୍ର ମଧ୍ୟ ଲାବଣ୍ୟବତୀରେ ଏ ଦିଗରେ ବିଶେଷ ଉତ୍ସାହ ପ୍ରକାଶ କରିନାହାଁନ୍ତି ।। ନୂଆ ଶବ୍ଦ ଗଢିବା ଅପେକ୍ଷା ଶବ୍ଦର ନୂଆ ପ୍ରୟୋଗରେ କବିତାର ଶ୍ରୀ ଓ ସୌଭାଗ୍ୟ । ଉପେନ୍ଦ୍ର ଭଞ୍ଜ ଯେଉଁ ନୂଆ ପ୍ରୟୋଗ କରିଛନ୍ତି, ତାହାହିଁ ତାଙ୍କୁ ଯଶସ୍ୱୀ ରଖିବ ।। ଶବ୍ଦ କବିତାର ଉପକରଣ ମାତ୍ର ନୁହେଁ, ତାହା ବି ସମୟ ଶାସିତ ଅଭିଜ୍ଞାନ । ଉପେନ୍ଦ୍ରଙ୍କ ଶବ୍ଦ ନିର୍ବାଚନ ତାଙ୍କ କବି ଜୀବନର ନିଃଚିନ୍ତ ନିରୁପଦ୍ରବ ସଙ୍ଗୀତ ମୁଖର ଗତିହୀନ ସମ୍ଭ୍ରାନ୍ତ ପରିବେଶକୁ ହିଁ ଚିହ୍ନାଇ ଦିଏ ।। ତାଙ୍କ ଭାଷା ଯୁଗର ଭାଷା ନୁହେଁ, ନିଜସ୍ୱ ବ୍ୟକ୍ତିଭାଷା ମାତ୍ର ।।

ବାକ୍ୟବିନ୍ୟାସ — ବାକ୍ୟବିନ୍ୟାସ କ୍ଷେତ୍ରରେ କବିତାର ଭାଷା ମଧ୍ୟ ଷ୍ଟାଣ୍ଡାର୍ଡ ଭାଷାର ନିୟମ ଭଙ୍ଗେ । ( ଭଷା ଭାଷାରେ କର୍ତ୍ତା, କର୍ମ, କ୍ରିୟା ସ୍ୱାଭାବିକ କ୍ରମ ଅଛି ।। କବିତାର କିନ୍ତୁ ବିପ୍ରତୀପ କ୍ରମ ବା ବିପର୍ଯ୍ୟସ୍ତ କ୍ରମରେ ବିଶ୍ୱାସ ।। ଲାବଣ୍ୟବତୀରେ ବିପ୍ରତୀପକ୍ରମର ବିପୁଳ ଆଧିପତ୍ୟ ଦୁର୍ଲକ୍ଷ୍ୟ ନୁହେଁ ।।

ବିଶେଷଣ ବିଶେଷ୍ୟ —

ନୃପସୁତା ସୁକେଶୀ
ସୀତା ସୀତାଂଶୁମୁଖୀ
ମସାଳିଆ ଛରୁ
କତର ଗୁଲ୍ଲୀ ଝଳି
ସ୍ୱାଦୁ ମନୋରମ
ଆଣିମାଦି ସୁଖଦାୟୀ ଇତ୍ୟାଦି ।

କର୍ତ୍ତା କ୍ରିୟା—

ଜାଣି ନ ଥିବୁ ତୁ
ଛଳି କହିଲା ଟଉଁ ଭୀରୁ
ମତ୍ତନ୍ତ ଯୁବତୀ
ବିଜେ ଲବଣ୍ୟ ନିଧି ଇତ୍ୟାଦି ।

କର୍ମ କ୍ରିୟା—

ହେଲାଣ ଚର୍ଚ୍ଚରୀ ପ୍ରକଟ କଟକେ
କଲାଣି ଫୁରୁଣା
ଖଟେ ମୁକୁତା
ବହି ଯାଉଛି କିବା କାଳି
ଭିଆଇଛି ଛାଣି ଆଣି ଶୋଭସାର
କି କରି ଦେବଚି ରତି ଇତ୍ୟାଦି ।

ଉପେନ୍ଦ୍ର ସ୍ୱାଭାବିକ କ୍ରମରେ ଅସଂଖ୍ୟ ବାକ୍ୟ ଲେଖିଛନ୍ତି ଅବଶ୍ୟ ।। ତେବେ ବିପ୍ରତୀପ କ୍ରମରେ ସୌନ୍ଦର୍ଯ୍ୟ ପ୍ରତି ସେ ବଡ ସଚେତନ ଥିଲେ ।। ସ୍ୱାଭାବିକ୍ କ୍ରମ ଅପେକ୍ଷା ବିପ୍ରତୀପ କ୍ରମରେ ଗଠନ ସୌନ୍ଦର୍ଯ୍ୟର ସୁଯୋଗ ବେଶି ।। ଅଧିକନ୍ତୁ ବାକ୍ୟରେ ପଦକ୍ରମ ଯେପରି ବ୍ୟାକରଣର ଅନୁଶାସନ ମାନେ ଠିକ୍ ସେପରି ଚିନ୍ତା ବା ଆବେଗର ଅନୁଶାସନକୁ ସ୍ୱୀକାର କରେ ବିପ୍ରତୀପ କ୍ରମ ଆବେଗର ତୀବ୍ରତାକୁ ସୂଚାଏ ଓ ଗଠନ ଭଙ୍ଗୀରେ ସୌନ୍ଦର୍ଯ୍ୟ ସୃଷ୍ଟି କରେ ।। କବିତାର ଏହି ବାକ୍ୟ ବିନ୍ୟାସ ଭଙ୍ଗୀଟିକୁ ଆଜି ଗଦ୍ୟରେ ପ୍ରୟୋଗ କରଯାଏ ।। ହେଇଥିପାଇଁ ଆଧୁନିକ ଗଦ୍ୟ ସୁଖପାଠ୍ୟ ଓ ପ୍ରୀତିକର ।।

## ଉପସଂହାରଃ—

ଭାଷା ମଧ୍ୟରେ ଭାଷାତୀତକୁ ପ୍ରତିଷ୍ଠା କରିବା କବିତାର ଲକ୍ଷଣ ବୋଲି ଆମେ ଜାଣିଛେ ଅର୍ଥାତ୍ କବିତାରେ ଭାଷାଥାଏ କେବଳ ନ ରହିବା ପାଇଁ । କହିହୁଏ, ' ସବୁ ଶବ୍ଦ ସରିଗଲେ ଯାହା ରହେ ତାହାହିଁ କବିତା ' ଭାଷା ବାହାନ ମାତ୍ର ।। ପହଞ୍ଚାଇ ଦେଲେ କାମ ଶେଷ ।। ତେଣୁ. ଲବଣ୍ୟବତୀରେ ଉପେନ୍ଦ୍ର ଏ ଯେଉଁ ସବୁ ପ୍ରକରଣ ପ୍ରକ୍ରିୟା ବ୍ୟବହାର କରିଛନ୍ତି ତାହା କ'ଣ ନିଜ ପାଇଁ ନିଜେ ନାହିଁ ? ରହିଅଛି କେବଳ ଏକ ମହତ୍ ଉଦ୍ଦେଶ୍ୟ ସାଧନ କରିବା ପାଇଁ ? ଭାଷା ଯେଉଁ ଉଦ୍ଦେଶ୍ୟରେ ବ୍ୟବହୃତ ହୋଇଛି ତାହାହିଁ କବିତାର ବିଲକ୍ଷଣ ? ଇୟାକବ-ସନ୍ (Roman Jakobson) କିନ୍ତୁ କହିବେ ଭାଷା କି ଭବରେ ଲୁହାପାଇଛି, ତାହାପ୍ରତି ପାଠକ ସଚେତନ ହୋଇ ଉଠେ । ( Linguistics and poetics ) ଅର୍ଥାତ୍ ଗଦ୍ୟରେ ଯେପରୀ ଭାଷା ପ୍ରତି ଦୃଷ୍ଟି ନ ଦେଇ ପାଠକ ସିଧା ଯାଇ ଅର୍ଥରେ ପହଞ୍ଚି ଯାଏ, କବିତାରେ ସେପରି କିଛି ଘଟେ ନାହିଁ । ବରଂ କବିତାର ଭଷା ଅର୍ଥ ଆଡକୁ ସିଧା ଠେଲି ନ ଦେଇ ନିଜ ଆଡକୁ ତାର ଦୃଷ୍ଟି ଆକର୍ଷଣ କରିଥାଏ ।। କବିତାରେ ଭଷାର ନିଜସ୍ୱ ଏକ ମହିମା ଅଛି, ସୌନ୍ଦର୍ଯ୍ୟ ଅଛି, ଭୂମିକା ବି ଅଛି ।। ଲବଣ୍ୟବତୀରର ଭଷା ସବୁବେଳେ ନିଜ ଆଡକୁ ପାଠକର ଦୃଷ୍ଟି ଆକର୍ଷଣ କରିବାକୁ ଚାହିଁଛି । ମୁକାରେ ଉକ୍ସି ଭାଷାର ଏହି ପ୍ରବୃତ୍ତିର ନାମ ଦେଇଛନ୍ତି Fore grounding ବା ପ୍ରମୁଖଣ । ଅର୍ଥାତ ଭଷା ଯେପରି କହେ ମୋ ଆଡକୁ ନ ଚାହିଁ ତୁମେ ରହି ପାରିବ ନାହିଁ ।। ଜାଁ ପଲ ସାର୍ତ୍ରେ କହିବେ ଅର୍ଥତ କବିତାରେ ଅନର୍ଥକାରୀ ।। ଗଦ୍ୟର ଅର୍ଥଥାଏ, କବିତାରେ ଅର୍ଥ ନିରର୍ଥକ ।। କବିତାର ଭଷାକୁ ଅର୍ଥବାହୀ କଲେ ବରଂ ତାହା ପ୍ରତି ଅସମ୍ମାନ ପ୍ରଦର୍ଶନ କରାଯାଏ ।। ଏ ସବୁ କଥାରେ ସମସ୍ତେ ସଂପୂର୍ଣ୍ଣ ବିଶ୍ୱାସ କରିବେ ନାହିଁ । ତେବେ ବାଧ୍ୟତା ମୂଳକ ଲକ୍ଷଣ ନ ହେଲେ ନାହିଁ ଭଷାର ପ୍ରମୁଖଣ ସାଧନ କବିତାର ଅନ୍ୟତମ ବିଶିଷ୍ଟ ଲକ୍ଷଣ ନିଶ୍ଚୟ ।। ଲବଣ୍ୟବତୀରେ ଭଷାର ସେହି ପ୍ରମୁଖଣ ବା ମଞ୍ଜନ ପାଇଁ ଉପରୋକ୍ତ ପ୍ରକରଣ ପ୍ରକ୍ରିୟା ସ୍ୱୀକୃତ ।। ( ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ 'ଲବଣ୍ୟବତୀରୁ' ଉଦାହରଣ ସଂଗୃହୀତ, ପ୍ରଥମ ସଂସ୍କରଣ, ୧୯୮୩) ।

# ଭଂଜ ରଚନାବଳୀର ବିଭାଗୀକରଣ

* ସୁମିତା ମିଶ୍ର
ବ୍ରହ୍ମାନଗର, ବ୍ରହ୍ମପୁର, ଗଞ୍ଜାମ-୭୬୦୦୦୧,



ଯୁଗୀୟ ପ୍ରବୃତ୍ତି ନେଇ ପଞ୍ଚସଖାର ଭଗବତ୍ ଧର୍ମଧାର ପରେ ପରେ ରୀତିଯୁଗୀୟ ରଂଗୀନ୍ କଳ୍ପନା ବିଳାସ ମଧ୍ୟରେ ସାହିତ୍ୟାକାଶରେ ଘୋଟିଯାଇଥିବା ଘନ୍ଦୁରଛାୟା ଆଡେଇ ଏକ ଉଦ୍ଦୀପ୍ତ ଅରୁଣିମାର ଆଗମନ ହୋଇଥିଲା ଘୁମୁସରର ଭଂଜବଂଶରେ । ସେହି ଉଦୀୟମାନ ଜ୍ଞାନର ଆଲୋକ ହେଉଛନ୍ତି କବି ସମ୍ରାଟ ଉପେନ୍ଦ୍ର ଭଂଜ । ଯେଉଁ ସମୟରେ ସାଂସ୍କୃତି ଓ ସମାଜ ମଧ୍ୟରେ ପ୍ରେମର ବହୁମୁଖୀ ପ୍ରବାହ ସହ ଶାସନ କ୍ଷେତ୍ରରେ ଅନ୍ଧକାରର ପଟାଟୋପ ଆବୃତ ହୋଇ ରହିଥିଲା ଠିକ୍ ଏହି ଘଡସନ୍ଧି ମୁହୂର୍ତ୍ତରେ ସାହିତ୍ୟକୁ ବହୁ ଅଳଂକାରରେ ବିମଣ୍ଡିତ କରି ଶବ୍ଦର ସଂଭାରରେ ସଜ୍ଜିତ କରାଇଥିଲେ ଭଂଜ, ତାଙ୍କରି ସୃଷ୍ଟି ମାଧ୍ୟମରେ । ରାତ୍ରି ଶେଷରେ ଉଜ୍ଜ୍ୱଳ ଶୁକ୍ରତାରା ଭଳି ରୀତିଯୁଗୀୟ ଆକାଶରେ ଓଡ଼ିଆ ସାହିତ୍ୟର ସେହି ସୁରା, ସାକୀ, ଶୃଂଗାର ଓ କାଳ୍ପନିକ କଥା ବସ୍ତୁର ଅନ୍ଧକାରାବୃତ ଦିଗ୍‌ବଳୟରେ ଭକ୍ତି ଓ ଜ୍ଞାନୋଜ୍ଜ୍ୱଳ ପ୍ରଭାତର ବାର୍ତ୍ତା ଧରି ଅଭ୍ୟୁଦୟ ହୋଇଥିଲା ସ୍ରଷ୍ଟାଙ୍କ ସାରସ୍ୱତ ସାଧନା । "ରାମତାରକ" ମନ୍ତ୍ର ସିଦ୍ଧିର ଦ୍ୱାହି ଦେଇ ନିଜକୁ ନିମିତ୍ତ ମାତ୍ର ଭାବେ ଅପୂର୍ବ କବିବର ପରିଚୟ ଦେଇ ଯାଇଛନ୍ତି । ରାଜବଂଶରେ ଜନ୍ମଗ୍ରହଣ କରିଥିଲେହେଁ ଜୀବନର ଦାରୁଣ ବିପର୍ଯ୍ୟୟ ମଧ୍ୟରେ କବିବର ରସାଳ ଛନ୍ଦରେ ଜନମୋହିତ କରିପାରିଥିଲେ । ଆଜି ବି ଓଡ଼ିଆ ସାହିତ୍ୟରେ ହିମାଳୟର ଉତ୍ତୁଙ୍ଗ ଶିଖର ରୂପ ପ୍ରଦାନ କରେ ଭଞ୍ଜଙ୍କ କାବ୍ୟ କବିତା । ତେଣୁ ଗୋପବନ୍ଧୁଙ୍କ ଭାଷାରେ ....

"ଗାଏ ତୁମ୍ଭ ଗୀତ ସଭରେ ପଣ୍ଡିତ
ପଥ ପ୍ରାନ୍ତେ ହୃଷ୍ଟ ମନା ।
ବିଲେ ବୋଲେ ଚଷା, ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ଏହି ସ୍ୱୀକାରୋକ୍ତିରୁ ଅନୁମିତ ହୁଏ ଭଞ୍ଜଙ୍କ କାବ୍ୟାବଳୀ ସମାଜରେ ବେଶ୍ ଆଦର ଲାଭ କରିଥିଲା । ଭଞ୍ଜଙ୍କ ପୂର୍ବସୂରୀମାନେ ଯେ ସ୍ୱଲେଖାବଳୀରେ ଜନପ୍ରିୟ ହୋଇପାରି ନ ଥିଲେ ତା'ନୁହେଁ ବରଂ ଭଞ୍ଜ ପୂର୍ବସୂରୀଙ୍କ ଦ୍ୱାରା କିଛି ପରିମାଣରେ ପ୍ରଭାବିତ ହୋଇଥିଲେ କହିଲେ ଚଳେ । କିନ୍ତୁ ବୀରବର ଉପେନ୍ଦ୍ର ନିଜସ୍ୱ ଶୈଳୀରେ ଅନନ୍ୟ ସାଧାରଣ କବି ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ଅମର ଲେଖନୀ ମାଧ୍ୟମରେ ଜୀବନ୍ତ ବର୍ଣ୍ଣନା ଚାତୁର୍ଯ୍ୟ, କଳ୍ପନାବିଳାସ ସହ ଆଳଙ୍କାରିକ ଛଟା ଏବଂ ପଦଯୋଜନାରେ ଅପୂର୍ବ ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି । କବିଙ୍କ ଅତୁଳନୀୟ ବହୁଶାସ୍ତ୍ରଦର୍ଶିତା ଓଡ଼ିଆ ସାହିତ୍ୟ ଦରବାରକୁ ଚମତ୍କୃତ କରିପାରିଛି । ରାଜବଂଶରେ ଜାତ ହେବାଫଳରେ ଶାସ୍ତ୍ର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଉଚ୍ଚଶିକ୍ଷାର ସୁବିଧା ସୁଯୋଗ ପାଇଥିଲେ । ପିତାମହ କବି ଧନଞ୍ଜୟ ଭଞ୍ଜ ହିଁ ନୈସର୍ଗିକ ପ୍ରତିଭାଶାଳୀ ଉପେନ୍ଦ୍ରଙ୍କର ଜ୍ଞାନ ବିସ୍ତାରରେ ସର୍ବଶ୍ରେଷ୍ଠ ସହାୟକ ଥିଲେ । ଯଦ୍ଦ୍ୱାରା ବହୁ କାବ୍ୟ

କବିତାର ରଚୟିତା ହୋଇ ସଂସ୍କୃତ ପଣ୍ଡିତ ସହ ତୁଳନୀୟ ହୋଇ ପାରିଥିଲେ । ତାଙ୍କ ବିବିଧ ରଚନା ମଧ୍ୟରେ ଭିନ୍ନ ଭିନ୍ନ ଧରଣର ନାଟକ, ପ୍ରାଚ୍ୟ-ଜ୍ଞାନକୋଷର ବେଦ-ବେଦାନ୍ତ, ଷଡଦର୍ଶନ, ଅଷ୍ଟାଦଶ ପୁରଣ, ମହାକାବ୍ୟ, ବ୍ୟାକରଣ, କାମସୂତ୍ର, ଜ୍ୟୋତିଷ, ଆୟୁର୍ବେଦ, ସଙ୍ଗୀତ ଶାସ୍ତ୍ର, ଛନ୍ଦ ଶାସ୍ତ୍ର, ଶକୁନ ଶାସ୍ତ୍ର, ଅଳଙ୍କାର ଶାସ୍ତ୍ର, ଧନୁର୍ବେଦ, ଅଭିଧାନ, ତନ୍ତ୍ର, ଦର୍ଶନ ଇତ୍ୟାଦି ସଂସ୍କୃତ ଗ୍ରନ୍ଥମାନଙ୍କୁ ଆୟତ୍ତ କରିଥିବା ଜଣାପଡ଼େ । କବୀନ୍ଦ୍ର ଉପେନ୍ଦ୍ର ଅନେକ ଗ୍ରନ୍ଥର ରଚୟିତା ହୋଇ ଥିଲେ ହେଁ ତାଙ୍କର ବହୁ ଗ୍ରନ୍ଥ ଆଜିବି ଲୁପ୍ତ ଅବସ୍ଥାରେ ରହିଯାଇଛି । ତାଙ୍କର ଯେଉଁ କେତେକ ଗ୍ରନ୍ଥ ଲୋକଲୋଚନକୁ ଆସିଛି ସେହି ଗ୍ରନ୍ଥ ଗୁଡ଼କର ବିଭିନ୍ନ ଭଗରେ ବିଭଗୀକରଣ କରାଯାଏ ।

ଶ୍ରୀଯୁକ୍ତ ମନମୋହନ ଚକ୍ରବର୍ତ୍ତୀ ୧୮୯୮ ମସିହାରେ ୪୨ ଟି ଗ୍ରନ୍ଥକୁ ଗ୍ରହଣ କରି ଚାରି ଭାଗରେ ବିଭକ୍ତ କରିଛନ୍ତି, ୧ । କ ) A Song ଛଅଟି ଖ ) Mythical Poems ସାତଟି ଗ) Fictional Poems ୨୦ ଟି ଘ) Rhetorical etc. - ସାତଟି ଭବେ ବିଭଗୀକରଣ କରିଛନ୍ତି । ଚୌତିଶା, ଚଉପଦୀଭୂଷଣ, ଚୌପଦୀ ଚନ୍ଦ୍ର, ଛଅପୋଇ, ଗାହା, ଦୋହା ଏହି ଛଅଟିକୁ A Song ର ଅନ୍ତର୍ଗତ କରିଛନ୍ତି ।

୧୯୧୬ ମସିହାରେ ଶ୍ରୀ ତାରିଣୀ ଚରଣ ରଥ ଭଞ୍ଜଙ୍କ ରଚିତ ୪୧ ଟି ଗ୍ରନ୍ଥକୁ ଗ୍ରହଣ କରିଛନ୍ତି । ୨୦ଟି ପ୍ରକାଶିତ ଗ୍ରନ୍ଥ ଏବଂ ଅପ୍ରକାଶିତ ୨୧ଟି ଗ୍ରନ୍ଥର ଶୈଳୀ ଅନୁଯାୟୀ ବିଭଗୀକରଣ କରିଛନ୍ତି । — କ) ସ୍ୱନାମଧନ୍ୟା ରାଜକନ୍ୟାମାନଙ୍କ ଲୀଳା ବର୍ଣ୍ଣନା, ଖ) କ୍ଷୁଦ୍ରକାବ୍ୟ, ଗ) ଶ୍ରୀକୃଷ୍ଣ ବିଷୟକ ପଦ୍ୟାବଳୀ, ଘ) ଅବଲମ୍ବନରେ ଲିଖିତ ( ଉଦାହରଣ ସ୍ୱରୂପ- ଷଡଋତୁ , ଙ) ନୈତିକ କାହାଣୀ ସମୂହ, ଚ) ଛନ୍ଦ ନିୟମ ବିଷୟକ ପଦ୍ୟଗ୍ରନ୍ଥ । ( ୨ )

୧୯୨୩ ମସିହାରେ ବିଜୟ ଚନ୍ଦ୍ର ମଜୁମଦାର୍ ମଧ୍ୟ ୪୨ଟିଗ୍ରନ୍ଥ ସ୍ୱୀକୃତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ସମୁଦାୟ ଗ୍ରନ୍ଥକୁ ସାତଭଗରେ ବିଭକ୍ତ କରିଛନ୍ତି (୩) — କ) A Song ଖ) Collection of short poems relating to puranic incidents. ଗ) Poems composed with stories of Puranic and historical origin. ଘ) Fictional poems ଙ) Rhetorical ଚ) Doctrinal ଛ) Glossary.

“ ଓଡ଼ିଆ ସାହିତ୍ୟର ଇତିହାସ ” ରେ ୧୯୨୮ ମସିହାରେ ପଣ୍ଡିତ ବିନାୟକ ମିଶ୍ର ଉପେନ୍ଦ୍ର ଭଞ୍ଜଙ୍କର ୪୧ଟି ଗ୍ରନ୍ଥର ସୂଚନା ଦେଇଛନ୍ତି । ଗୀତିକା ଛଅଟି, ପୌରାଣିକ କାବ୍ୟ-ଆଠଟି, କାଳ୍ପନିକ କାବ୍ୟ-ଏକୋଇଶି, ଆଳଙ୍କାରିକ ଓ ବିବିଧ ରଚନା ଯଥାକ୍ରମେ ତିନୋଟି ଲେଖାଏଁ ବୋଲି ନିର୍ଦ୍ଧାରଣ କରି ଭଞ୍ଜୀୟ ରଚନାବଳୀକୁ ପାଞ୍ଚ ଭଗରେ ବିଭକ୍ତ କରିଛନ୍ତି । (୪)

୧୯୩୮ ମସିହାରେ ଶ୍ରୀଧର ଦାସ, ଉପେନ୍ଦ୍ର ଭଞ୍ଜଙ୍କ ୪୨ଟି ଗ୍ରନ୍ଥକୁ ତିନି ଭଗରେ ବିଭଗୀକରଣ କରିଥିବା ଦେଖିବାକୁ ମିଳେ । ୫ । କ) କାବ୍ୟ-ବାଇଶିଟି ଖ) କବିତା ଛଅଟି ଗ) ବିବିଧରଚନା-ଚଉଦଟି ।

୧୯୫୯ ମସିହାରେ ଶ୍ରୀଯୁକ୍ତ ଅନନ୍ତ ପଦ୍ମନାଭ-ପଟ୍ଟନାୟକ, ଉପେନ୍ଦ୍ର ଭଞ୍ଜଙ୍କର ୫୮ ଟି ଗ୍ରନ୍ଥକୁ ତାଲିକା-ଭୁକ୍ତ କରିଛନ୍ତି । ତନ୍ମଧ୍ୟରୁ ପ୍ରକାଶିତ - ୨୦ଟି ଓ ଅପ୍ରକାଶିତ - ୩୮ଟି, କିନ୍ତୁ ୪୨ଟି ରଚନାକୁ ନିମ୍ନ-ଲିଖିତ ପାଞ୍ଚ ଭଗରେ ବିଭଗୀକରଣ କରିଛନ୍ତି । (୬) ଗୀତିକା- ସାତଟି, ପୌରାଣିକ କାବ୍ୟ ଆଠଟି, କାଳ୍ପନିକ କାବ୍ୟ ଏକୋଇଶିଟି, ଆଳଙ୍କାରିକ ତିନୋଟି ଓ ବିବିଧରଚନା ତିନୋଟି । ଶ୍ରୀ ପଟ୍ଟନାୟକ ପଣ୍ଡିତ ବିନାୟକ ମିଶ୍ରଙ୍କ ବିଭଗୀକରଣକୁ 'ଗ୍ରହଣ' କରିବା ସଙ୍ଗେ ସଙ୍ଗେ ଗୀତିକା ବଢ଼ି ସଂଖ୍ୟାରେ ଗୋଟିଏ ଯୋଗ କରି ମୋଟ ବହିର ସଂଖ୍ୟା ୪୨ ବୋଲି ଉଲ୍ଲେଖ କରିଛନ୍ତି ।

କିନ୍ତୁ ୧୯୬୪ ମସିହାରେ ପ୍ରକାଶିତ " ଭଞ୍ଜ ସ୍ମରଣିକା ବାରିପଦା " ରେ ଏକ ତାଲିକା ଦିଆଯାଇଥିଲା ଯାହାକି ଭିନ୍ନ ଧରଣର ଥିଲା । " ଉପେନ୍ଦ୍ରଙ୍କ ସାରସ୍ୱତ ସୃଷ୍ଟି ସଂପଦ " ଶୀର୍ଷକରେ ଉଲ୍ଲିଖିତ କରାଯାଇଥିଲା କେତେକ ପ୍ରକାଶିତ ଏବଂ ଅପ୍ରକାଶିତ ଗ୍ରନ୍ଥ । ପ୍ରକାଶିତ ଗ୍ରନ୍ଥ ମଧ୍ୟରେ ପୌରାଣିକ ଗ୍ରନ୍ଥ ଛଅଟି, କାଳ୍ପନିକ କାବ୍ୟ-ତିନୋଟି, ବିବିଧରଚନା ଗୋଟିଏ, ଆଳଙ୍କାରିକ କାବ୍ୟ ଗୋଟିଏ, ଅଭିଧାନ ଗୋଟିଏ, ଏହିପରି ମୋଟ ୧୨ଟି ଗ୍ରନ୍ଥ ଗ୍ରହଣ କରାଯାଇଛି । ଅପ୍ରକାଶିତ ଗ୍ରନ୍ଥରୂପେ ପୌରାଣିକ-ତିନୋଟି, କାଳ୍ପନିକ-ବାରଟି, ବିବିଧ-ନଅଟି, ମୋଟ ୨୪ଟି ଗ୍ରନ୍ଥର ସୂଚନା ଦିଆଯାଇଛି । (୭)

ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଉପେନ୍ଦ୍ରଙ୍କ ଚିତ୍ରକାବ୍ୟବନ୍ଧୋଦୟ ତାଲିକାକୁ ଗ୍ରହଣ କରିଛନ୍ତି । ସେହି ତାଲିକା ଅନୁଯାୟୀ ଭଞ୍ଜଙ୍କ ସମଗ୍ର ରଚନାକୁ ଛଅ ଭାଗରେ ବିଭକ୍ତ କରିଛନ୍ତି । (୮) କ) ଚଉତିଶା, ଚଉପଦୀ, ଦୋହା, ପୋଇ ଇତ୍ୟାଦି, ଖ) ରସ ଗ୍ରନ୍ଥ କୃଷ୍ଣ ବିଷୟକ ବା ପୌରାଣିକ, ଗ) କଳ୍ପନା ମାଧୁରୀ ବ୍ୟଞ୍ଜକ ରସଗ୍ରନ୍ଥ, ଘ) ଅଳଙ୍କାର ରୀତି ଗ୍ରନ୍ଥ, ଙ) କୋଷଗ୍ରନ୍ଥ ଚ) ଚିତ୍ରକାବ୍ୟ ।

୧୯୭୧ ମସିହାରେ ଶ୍ରୀଯୁକ୍ତ ନିତ୍ୟାନନ୍ଦ ନାୟକ " କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ " ପ୍ରବନ୍ଧରେ କବି ସମ୍ରାଟଙ୍କ ଗ୍ରନ୍ଥ ସଂଖ୍ୟା ୨୮ ବୋଲି ଗ୍ରହଣ କରିଛନ୍ତି । ଏହି ବିଭାଗୀକରଣ ୧୯୪୮ ମସିହାର ମହତାବଙ୍କ ତାଲିକାକୁ ନେଇ କରିଛନ୍ତି । ଶ୍ରୀ ନାୟକ ଉପେନ୍ଦ୍ରଙ୍କ ୨୮ଟି ରଚନାବଳୀକୁ ଶ୍ରୀ ମିଶ୍ର ଏବଂ ଶ୍ରୀ ପଟ୍ଟନାୟକଙ୍କ ଭଳି ନିମ୍ନମତେ ପାଞ୍ଚ ଭାଗରେ ତାଲିକାଭୁକ୍ତ କରିଛନ୍ତି । (୯) ଯଥା ଗୀତିକା, ପୌରାଣିକ କାବ୍ୟ କାଳ୍ପନିକ କାବ୍ୟ ଆଳଙ୍କାରିକ କାବ୍ୟ, ବିବିଧରଚନା ।

ଶ୍ରୀଯୁକ୍ତ ବୃନ୍ଦାବନ ଆଚାର୍ଯ୍ୟ ଉପେନ୍ଦ୍ରଙ୍କର ୨୪ଟି ଗ୍ରନ୍ଥକୁ ପ୍ରକାଶିତ ଭାବେ ଗ୍ରହଣ କରିଛନ୍ତି । (୧୦) ଅପ୍ରକାଶିତ କାବ୍ୟର ସଂଖ୍ୟା ଏ ପର୍ଯ୍ୟନ୍ତ ଜଣା ନ ଥିବା କଥା ମଧ୍ୟ ସ୍ୱୀକାର କରିଛନ୍ତି । ଉପେନ୍ଦ୍ରଙ୍କ କେତେକ କାବ୍ୟାବଳୀକୁ ପୌରାଣିକ ବିଷୟବସ୍ତୁ ଅବଲମ୍ବନରେ ରଚିତ ବୋଲି ଶ୍ରୀ ଆଚାର୍ଯ୍ୟ ମତ ପ୍ରଦାନ କରିଛନ୍ତି । ଯଥା ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ, ଅବନାରସତରଙ୍ଗ, କଳାକୌତୁକ, ଛାନ୍ଦଭୂଷଣ । କାଳ୍ପନିକ ବା ଔପନ୍ୟାସିକ କଥାବସ୍ତୁ ଉପରେ ଲାବଣ୍ୟବତୀ, ପ୍ରେମସୁଧାନିଧି, ରସିକ ହାରାବଳୀ, ସୁବର୍ଣ୍ଣରେଖା, ରସଲେଖା, କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ ଗ୍ରହଣ କରିଛନ୍ତି । ଆଳଙ୍କାରିକ କାବ୍ୟଭାବେ ରସପଞ୍ଚକ ଏବଂ ଗୀତାଭିଧାନକୁ କୋଷଗ୍ରନ୍ଥ, ଚିତ୍ରକାବ୍ୟ-ବନ୍ଧୋଦୟକୁ ଚିତ୍ରକାବ୍ୟଭାବେ ରୂପ ପ୍ରଦାନ କରିଛନ୍ତି । ଏତଦ୍ ବ୍ୟତୀତ ରଚନା ମଧ୍ୟରେ ବିଭିନ୍ନ ସଙ୍ଗୀତ ଓ ଚୌପଦୀ ସ୍ୱୀକାର କରିଥିଲେ ହେଁ କୌଣସି ବିଭାଗ ମଧ୍ୟରେ ଏହାକୁ ଅନ୍ତର୍ଭୁକ୍ତ କରିନାହାନ୍ତି ।

ଶ୍ରୀଯୁକ୍ତ ସୁରେନ୍ଦ୍ର ମହାରଣା ସର୍ବମୋଟ ୪୩ଟି ଗ୍ରନ୍ଥର ସୂଚନା ଦେଇ ନିମ୍ନୋକ୍ତ ପ୍ରକାରେ ତାହାର ବିଭାଗୀକରଣ କରିଛନ୍ତି । କ) ପୌରାଣିକ କାବ୍ୟ, ଖ) କାଳ୍ପନିକ କାବ୍ୟ, ଗ) ଆଳଙ୍କାରିକ କାବ୍ୟ, ଘ) ଗୀତିକା, ଙ) ବିବିଧରଚନା । (୧୧)

ଶ୍ରୀ ଚାଉରୀ ବନ୍ଧୁକର (୧୨) ଉପେନ୍ଦ୍ରଙ୍କ ରଚନାବଳୀକୁ ତିନି ଭାଗରେ ବିଭକ୍ତ କରି ତନ୍ମଧ୍ୟରେ ୨୨ଟି ଗ୍ରନ୍ଥକୁ ନେଇଛନ୍ତି । ଯଥା —

କ) ଆଧ୍ୟାତ୍ମିକ ଭାବକେନ୍ଦ୍ରିକ ରଚନାବଳୀ-ଛଅ,
ଖ) ପ୍ରେମ ବର୍ଣ୍ଣନାମୂଳକ ରଚନାବଳୀ-ଦଶ,
ଗ) ସଂସ୍କୃତ କାବ୍ୟ ପରି ପାଣ୍ଡିତ୍ୟପୂର୍ଣ୍ଣ ଶାସ୍ତ୍ରୀୟ ରଚନାବଳୀ-ଛଅ ।

ବିଭିନ୍ନ ଆଲୋଚକମାନଙ୍କ ଦୃଷ୍ଟିରେ ଏ ଥିଲା ଉପେନ୍ଦ୍ରଙ୍କ ଗ୍ରନ୍ଥର ବିଭାଗୀକରଣ ଉପରେ ଭିନ୍ନ ଭିନ୍ନ ମତବାଦ । କେବଳ ଅନୁମାନର ଆଶ୍ରୟ ନେଇ ହିଁ

ଉପେନ୍ଦ୍ରଙ୍କ ଗ୍ରନ୍ଥ ସଂଖ୍ୟା ନିର୍ଣ୍ଣୟ କରି ବିଭଗୀକରଣ କରିଛନ୍ତି । ପ୍ରକୃତରେ ଉପେନ୍ଦ୍ର କେତେଖଣ୍ଡି କାବ୍ୟ ରଚନା କରିଥିଲେ ଏପର୍ଯ୍ୟନ୍ତ ଜଣାନାହିଁ । କିନ୍ତୁ ସ୍ୱୟଂ ଭଞ୍ଜ ' ଚିତ୍ରକାବ୍ୟ ବନ୍ଧୋଦୟ ' ରେ ୨୬ଟି ଗ୍ରନ୍ଥର ସୂଚୀ ପ୍ରଦାନ କରିଛନ୍ତି । ହେମ ମଞ୍ଜରୀ, ରସ ଲେଖା, କାମକଳା, ମନୋରମା, ପ୍ରେମଲତା, ଭଗବତୀ, ମୁକ୍ତାବତୀ, ବ୍ରଜଲୀଳା, ଛାନ୍ଦଭୂଷଣ, ଷଡଋତୁ, ରସପଞ୍ଚକ, କଳା କଉତୁକ, ସୁଭଦ୍ରା ପରିଣୟ, ବୈଦେହୀଶ ବିଳାସ, ରସ ତରଙ୍ଗ, ରାମଲୀଳାମୃତ, ପ୍ରେମ ସୁଧାନିଧି, ରସିକ ହାରାବଳୀ, କୁଞ୍ଜ ବିହାର, ଲାବଣ୍ୟବତୀ, ପୁରୁଷୋତ୍ତମ ମହାତ୍ମ୍ୟ, ଗୀତାଭିଧାନ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ତ୍ରୈଲୋକ୍ୟ ମୋହିନୀ ଓ ଚିତ୍ରକାବ୍ୟ ବନ୍ଧୋଦୟ ।

ଏତଦ୍ ଭିନ୍ନ ସେ କହିଛନ୍ତି —

" ଅଶେଷ ଚଉତିଶା ଚଉପଦୀ
ତାହା କେତେ ଯେ କହିବି ସଂପାଦି
ଗାହା ଦୋହା ଷୋଡଶେନ୍ଦୁ ଛପୋଇ
ଇତ୍ୟାଦି କବିତ୍ୱ ଗଣନା ନାହିଁ । "

ଉକ୍ତ ଉକ୍ତିରୁ ପ୍ରମାଣିତ ହେଉଛି ଯେ କବି ବହୁ କାବ୍ୟାବଳୀର ରଚୟିତା । ଯାହାକି ଆଜି ମଧ୍ୟ ଲୋକଲୋଚନକୁ ଆସିପାରି ନାହିଁ । କବିଙ୍କ ଭଷାରେ " ନିର୍ମିତ ଛାନ୍ଦପୋଥି ପାଞ୍ଚସାତ " ଅର୍ଥାତ୍ ଏହି " ପାଞ୍ଚସାତ " ସଂଖ୍ୟାକୁ ବିଭିନ୍ନ ଭବେ ଗ୍ରହଣ କରଯାଇଛି । ଉଦାହରଣ ସ୍ୱରୂପ ପାଞ୍ଚ ବା ସାତ ( ୫.୭ ), ପାଞ୍ଚ + ସାତ = ୧୨ ଟି ଗ୍ରନ୍ଥ । ସତାବନ ( ୫୭ ), ପାଞ୍ଚଶତ ( ୫୦୦ ), । ଏହିପରି ଭବେ ଦ୍ୱିଧା ଉପୁଜୁଛି ଉପେନ୍ଦ୍ରଙ୍କ ଗ୍ରନ୍ଥ ସମ୍ବନ୍ଧରେ । ଉପେନ୍ଦ୍ର ମଧ୍ୟ ନିଜେ ଅନ୍ୟ ନାମରେ କେତେକ ରଚନାବଳୀ ପ୍ରଦାନ କରିବା କଥା ସ୍ୱୀକାର କରିଛନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ କେହିବି ସଠିକ୍ ରୂପେ ତାଙ୍କ ଗ୍ରନ୍ଥର ପରିଚୟ ପାଇପାରି ନାହାନ୍ତି । ଆଜି ମଧ୍ୟ ଓଡ଼ିଆ ସାହିତ୍ୟରେ ବୀରବର ଉପେନ୍ଦ୍ର ଭଞ୍ଜଙ୍କ ଗ୍ରନ୍ଥ ଉପରେ ଆଲୋଚନା ସମାଲୋଚନା ଚାଲିଥିବା ବେଳେ ବିଭିନ୍ନ ସଭ ସମିତିରେ ତର୍କ ବିତର୍କ ଚାଲିଛି । ଅବଶ୍ୟ ଉପେନ୍ଦ୍ର ଭଞ୍ଜଙ୍କ କୃତିର ସଠିକ୍ ଧାରଣା ନ ଥିଲେହେଁ ଯେଉଁ କେତେଗୋଟି ଗ୍ରନ୍ଥର ସନ୍ଧାନ ମିଳିଛି ତାହାହିଁ ବହୁ ମୂଲ୍ୟବାନ ଅଟେ । ଶ୍ରୀଯୁକ୍ତ-ସଚ୍ଚିଦାନନ୍ଦ ମିଶ୍ର " ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀ " ଶୀର୍ଷକ ପ୍ରବନ୍ଧ ମଧ୍ୟରେ ଉପେନ୍ଦ୍ର ଗ୍ରନ୍ଥ ତାଲିକାକୁ ସଂକୁଚିତ କରିବାକୁ ବସିଥିବା ବେଳେ ସମୟ କ୍ରମେ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ଭଣିତା ଥାଇ ମିଳୁଥିବା କାବ୍ୟ ଓ କବିତା ଆଦି ତାଙ୍କର ଏଭଳି ଆଲୋଚନାକୁ ଭବିଷ୍ୟତରେ ବିରୋଧ କରିବାର ଯଥେଷ୍ଟ ସମ୍ଭାବନା ରହିଛି । ଆଜି ପର୍ଯ୍ୟନ୍ତ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ସଂଖ୍ୟା ନିର୍ଦ୍ଧାରଣକୁ ବଢାଇ ବଢାଇ ୯୪ ପର୍ଯ୍ୟନ୍ତ ନିଆଗଲାଣି । ଏହି ୯୪ଟି ଗ୍ରନ୍ଥ ମଧ୍ୟରେ କେତେକ ଆଲୋଚକ ମହାନାଟକ, କଳା କଣ୍ଟକ, କଳକଣ୍ଠକ, ମିଳନ ମଞ୍ଜରୀ, ପଞ୍ଚଶାୟକ, ସୁଭଦ୍ରା-ସାର, ରଘୁନାଥ ବିଳାସ ଆଦି କେତେକ ଗ୍ରନ୍ଥକୁ ସଂଯୋଗ କରିଥିବାର ଦେଖିବାକୁ ମିଳେ । କିନ୍ତୁ ଏଥି ମଧ୍ୟରୁ କେତେକ ଗ୍ରନ୍ଥରେ ଅନ୍ୟ କୌଣସି ବ୍ୟକ୍ତି ବିଶେଷଙ୍କ ନାମରେ ଭଣିତା ଥିବାଯୋଗୁଁ ସନ୍ଦେହ ଜାତହେବା ସ୍ୱାଭବିକ୍ । ପୁନଶ୍ଚ କେତେକ ଗ୍ରନ୍ଥର ନାମକୁ ଆଲୋଚକମାନେ ମନକୁ ମନ ଯୋଡ଼ି-ଦେବା ଦ୍ୱାରା ପରବର୍ତ୍ତୀ ଆଲୋଚକଙ୍କୁ ମଧ୍ୟ ବିପଥଗାମୀ କରିବାର ସମ୍ଭାବନା ରହିଛି ।

ଏସବୁ ସତ୍ତ୍ୱେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଯେ ବହୁ କାବ୍ୟ କବିତାଦିର ରଚୟିତା, ତାହା ଅନସ୍ୱୀକାର୍ଯ୍ୟ । ତାଙ୍କର ରଚନାବଳୀକୁ ମୁଖ୍ୟତଃ ପ୍ରକାଶିତ ଓ ଅପ୍ରକାଶିତ ଦୁଇ ଭଗରେ ବିଭକ୍ତ କରି ଏହି ଦୁଇ ଭଗକୁ ପୁନଶ୍ଚ ଉପେନ୍ଦ୍ର ଭଞ୍ଜଙ୍କ ଭଣିତା ଥାଇ ଓ ଅନ୍ୟ ନାମରେ ଭଣିତା ଥାଇ ଉପେନ୍ଦ୍ର ନାମରେ

ପ୍ରଚଳିତ ଏପରି ଦୁଇ ଭାଗରେ ବିଭକ୍ତ କରଯାଇ-ପାରେ । ତା'ପରେ ଏହି ଦୁଇଭାଗକୁ ଗୀତିକା, କାଳ୍ପନିକ କାବ୍ୟ, ପୌରାଣିକ କାବ୍ୟ, ଆଳଙ୍କାରିକ କାବ୍ୟ, କୋଷଗ୍ରନ୍ଥ ଓ ବିବିଧରଚନା ରୂପେ ଛଅ ଭାଗରେ ବିଭକ୍ତିକରଣ କରଯାଇପାରେ । ଏହାଦ୍ୱାରା କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚନାବଳୀର ସାମଗ୍ରିକ ରୂପ ମିଳିବା ସଙ୍ଗେ ସଙ୍ଗେ କୃତିର ଆଲୋଚନାର ପଥ ସୁଗମ ହୋଇପାରିବ ବୋଲି ମନେହୁଏ ।

## ପାଦଟୀକା :—


୧ । ମନମୋହନ ଚକ୍ରବର୍ତ୍ତୀ, Notes on the language and literature of Orissa, Part-III & IV J. A. S. B Vol L x VII, part I, No 4, Calcutta. 1998 P-365-361.

୨ । ତାରିଣୀ ରଥ, ଉତ୍କଳ ସାହିତ୍ୟର ଇତିହାସ, ତାରିଣୀ ଚରଣ ଗ୍ରନ୍ଥାବଳୀ ବ୍ରହ୍ମପୁର, ୧୯୮୦ । ପୃ-୨୬୧-୨୬୨ ।

୩ । ବିଜୟ ଚନ୍ଦ୍ର ମଜୁମଦାର୍; Typical Selections from Oriya literature. Vol-II, 1923. Introduction P x x to x x i i.

୪ । ବିନାୟକ ମିଶ୍ର, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ୧୯୨୮ ପୃ ୧୨୪ ।

୫ । ଶ୍ରୀଧର ଦାସ, ଭଞ୍ଜ କବି, କଟକ, ୧୯୩୮, ପୃ ୧୨-୧୩ ।

୬ । ଅନନ୍ତ ପଦ୍ମନାଭ ପଟ୍ଟନାୟକ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, କଟକ, ୨୯୫୯, ପୃ ୪୨-୪୩ ।

୭ । ଭଞ୍ଜ ସ୍ମରଣିକା, ଉପେନ୍ଦ୍ରଙ୍କ ସାରସ୍ୱତ ସୃଷ୍ଟି ସମ୍ପଦ, ବାରିପଦା, ୧୯୬୯, ପୃ ୮-୯ ।

୮ । ସୂର୍ଯ୍ୟନାରାୟଣ ଦାସ, ଓଡ଼ିଆ ସାହିତ୍ୟର ଇତିହାସ, ( ୨ୟ ) କଟକ, ୧୯୬୫, ପୃ ୩୬୩ ।

୯ । ନିତ୍ୟାନନ୍ଦ ନାୟକ, ଭଞ୍ଜ ସ୍ମରଣିକା ୨ୟ ଅର୍ଘ୍ୟ, ରାଉରକେଲା, ୧୯୭୧; କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ପୃ ୫ ।

୧୦ । ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସ କଟକ, ୧୯୭୯, ପୃ ୧୬୧-୧୬୨ ।

୧୧ । ସୁରେନ୍ଦ୍ର ମହାରଣା, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ୧୯୮୮, ପୃ ୩୬୮-୩୬୯, ।

୧୨ । ବାଉରୀ ବନ୍ଧୁ କର, ଓଡ଼ିଆ ସାହିତ୍ୟର ଇତିହାସ, କଟକ, ୧୯୮୯, ପୃ ୧୬୧-୨୬୨ ।




# ଭଞ୍ଜ ଭାରତୀରେ ଶ୍ରୀଜଗନ୍ନାଥ

● ନନ୍ଦିତା ମିଶ୍ର ଏମ୍. ଏ. ଏମ୍. ଫିଲ୍
ଗାନ୍ଧିନଗର ବ୍ରହ୍ମପୁର, ଗଞ୍ଜାମ



ପ୍ରାଚୀନ କାଳରୁ ଆର୍ଯ୍ୟ ଭୂମିରେ ଯେଉଁ ଧାର୍ମିକ ଓ ସାଂସ୍କୃତିକ ଭାବଧାରାର ସ୍ରୋତ ପ୍ରବାହିତ ହୋଇ ଆସୁଛି, ତାହାକୁ ବିଶ୍ଳେଷଣ କଲେ, ସବୁରି ମୂଳରେ ଶ୍ରୀଜଗନ୍ନାଥ ଧର୍ମର ଉତ୍କର୍ଷତା ଉତ୍ତମ ରୂପେ ପରିଲକ୍ଷିତ ହୁଏ । ସେହି ପରମ୍ପରାରେ ଭାରତରେ ପ୍ରତ୍ୟେକ ପ୍ରାଚୀନ ସାହିତ୍ୟ, ଅଧିକାଂଶ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ପ୍ରଶସ୍ତି ଗାନ କରିବାକୁ ଭୁଲିନାହାଁନ୍ତି । ଶ୍ରୀଜଗନ୍ନାଥ ଧାମ ହେଉଛି ଅତି ପବିତ୍ର ପୀଠ । ଏହି ପୁରୀ ଧାମ ପୁରୁଷୋତ୍ତମ କ୍ଷେତ୍ର ନାମରେ ଖ୍ୟାତ । ଏହି ଶଙ୍ଖତୀର୍ଥର ରାଜା ସ୍ୱୟଂ ଶ୍ରୀ ଜଗନ୍ନାଥ । ତାଙ୍କୁ ଭକ୍ତ ମାନେ ବିଭିନ୍ନ ନାମରେ ଡାକନ୍ତି । ପୁରୁଷୋତ୍ତମ, ରାଧାକୃଷ୍ଣ ଜଗନ୍ନାଥ, ପରଂବ୍ରହ୍ମ ନାରାୟଣ ଇତ୍ୟାଦି । ଯେ ବ୍ରାହ୍ମଣ, ସେ କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରି-ବର୍ଣ୍ଣକୁ ଧର୍ମ, ଅର୍ଥ, କାମ, ମୋକ୍ଷ — ଚତୁର୍ବର୍ଗ ଫଳ ଦିଅନ୍ତି । ବିଭିନ୍ନ ଧର୍ମରେ ବିଭିନ୍ନ ସଂସ୍କୃତିଗତ ସଂପ୍ରଦାୟ ମାନଙ୍କରେ, ଭିନ୍ନ ରୁଚି ସମ୍ପନ୍ନ ବ୍ୟକ୍ତି ମାନଙ୍କରେ ମଧ୍ୟ ଏକତା ଓ ମୈତ୍ରୀ ମାଧ୍ୟମରେ ବିଶ୍ୱ ପ୍ରୀତିର ଭୂମିକା ଗ୍ରହଣ କରିଛି ଉତ୍କଳୀୟ ସଂସ୍କୃତିର ଏହି ପୁଣ୍ୟମୟ ଜଗନ୍ନାଥ ତତ୍ତ୍ୱ । ଓଡ଼ିଆ ସାହିତ୍ୟରେ ଅନେକ ଭକ୍ତ କବି ଭବୁକ, ଏ ଦିବ୍ୟ ତତ୍ତ୍ୱକୁ ବିଭିନ୍ନ ରୂପରେ ଦର୍ଶନ କରିଛନ୍ତି; ନିଜ ନିଜ ଦିବ୍ୟ ନେତ୍ରରେ। ଏହି ବରପୁତ୍ର ମାନଙ୍କ ମଧ୍ୟରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଅନ୍ୟତମ ତାଙ୍କ ରଚିତ ବିଭିନ୍ନ କାବ୍ୟ କବିତାରେ ବିଶେଷ କରି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ରସିକ ହାରାବଳୀ, ବୈଦେହୀଶ ବିଳାସ ଯଦ୍ୟପି ରାମ ତାରକ ମହାକାବ୍ୟ ତଥାପି ଭଞ୍ଜ କବିଙ୍କ ଲେଖନୀରୁ ସ୍ଥଳ ବିଶେଷରେ ଜଗନ୍ନାଥ ତତ୍ତ୍ୱର ସମାବେଶ ଘଟିଛି ।

## ବୈଦେହୀଶ ବିଳାସ :—

ଭଞ୍ଜକବି ହେଉଛନ୍ତି ମୂଳ ରୂପରେ ସୀତାପତି ଶ୍ରୀ ରାମଚନ୍ଦ୍ର ମହାପ୍ରଭୁଙ୍କ ପରମ ଭକ୍ତ । ରାମ ତାରକ ମନ୍ତ୍ର ଜପ ଦ୍ୱାରା ଆପଣାର ଅପୂର୍ବ କବିତ୍ୱ ଶକ୍ତି ଲାଭ ସମ୍ପର୍କରେ ସେ ନିଜେ କାବ୍ୟ ମାନଙ୍କରେ ଦର୍ଶାଇଛନ୍ତି । ବୈଦେହୀଶ ବିଳାସ କାବ୍ୟର ମଙ୍ଗଳାଚରଣ ପ୍ରସଙ୍ଗରେ ସେ ସ୍ୱୀୟ ରାମ ଭକ୍ତିର ପରିଚୟ ଦେଇ ରାମ ତାରକମନ୍ତ୍ର ବିଷୟରେ ସୂଚାଇଛନ୍ତି । ତାଙ୍କ ଅଭିବ୍ୟକ୍ତିରେ

ବଳାଇ ଚିତ୍ତ ଅନବରତ ଭରେ୍ୟ ଗ୍ରହଣ ତାରକ ମନ୍ତ୍ର
ସୀତା ଶ୍ରୀରାମ ଚରିତ ଗୀତ କୁତେ ଲାଳସ ଯେ "
ବୈ: ବି. ୧/୩ )

'ବୈଦେହୀଶ ବିଳାସ'ର ପ୍ରଥମ ଛାନ୍ଦର ପ୍ରଥମ ଦୁଇଟି ପଦରେ ମଙ୍ଗଳା ଚରଣ କରାଯାଇଛି । ପରମ୍ପରାରୁ ଜଣାଯାଏ ବିଭିନ୍ନ ଭକ୍ତ ଜଗନ୍ନାଥଙ୍କୁ ନିଜ ନିଜ ଦୃଷ୍ଟିରୁ ଦେଖି ଏକ ନିର୍ଦ୍ଦିଷ୍ଟ ଦେବତା ବୋଲି ମତ ପ୍ରକାଶ କଲେ । ସ୍ୱାର୍ତ୍ତ ଶଙ୍କର ପନ୍ଥୀ ମାନେ କହିଲେ "ଜଗନ୍ନାଥ ହେଉଛନ୍ତି ବିଷ୍ଣୁ" । ରାମାନୁଜପନ୍ଥୀ କହିଲେ, "ସେ ହେଉଛନ୍ତି ନାରାୟଣ," ନିମ୍ବାର୍କପନ୍ଥୀ କହିଲେ "ସେ ହେଉଛନ୍ତି ମାଧବ," ଚୈତନ୍ୟପନ୍ଥୀ କହିଲେ "ସେ ହେଉଛନ୍ତି ଶ୍ରୀକୃଷ୍ଣ" । ଏପରିକି ଶୈବ, ଶାକ୍ତ, ସୌର, ଗାଣପତ୍ୟ ପ୍ରଭୃତି ସମସ୍ତେ କହିଲେ, "ଜଗନ୍ନାଥ ଆମର ଦେବତା" । କିଏ କେଉଁ ଭଳି ଭାବରେ ଯୁକ୍ତି ସ୍ଥାପନ କରି ନିଜର ମତ

ପ୍ରତିଷ୍ଠା କରିବାକୁ ଲାଗିଲେ । ଜଗନ୍ନାଥ ଧାମର କି ଆକର୍ଷଣ ଶକ୍ତି ଅଛି କେଜାଣି, ସମଗ୍ର ହିନ୍ଦୁ ଭାରତ ଜଗନ୍ନାଥଙ୍କୁ ନିଜର ବୋଲି ଦାବୀ କଲା । ଭକ୍ତପ୍ରବର ଓଡ଼ିଆ ସଂସ୍କୃତିର ପରିପୂର୍ଣ୍ଣ ପ୍ରକାଶ, ମହାକବି ଉପେନ୍ଦ୍ର -ଭଞ୍ଜ କହିଲେ, ହିନ୍ଦୁ ଜଗତରେ ଯେତେ ଯେତେ ଧାର୍ମିକ ମତ ଓ ତତ୍ତ୍ୱ ରହିଛି, ସେ ସବୁ ଜଗନ୍ନାଥଙ୍କ ଠାରେ ଲୀନ ।

ଭଞ୍ଜ କବି ମୁଖ୍ୟ ରୂପରେ ରାମ ଚରିତର ଆଧାରରେ ବିବିଧ କାବ୍ୟ ରଚନା କରିଥିଲେ ମଧ୍ୟ ଜଗନ୍ନାଥଙ୍କୁ ଉପେକ୍ଷା କରି ନାହାନ୍ତି । ରାମ ରୂପୀ ଜଗନ୍ନାଥଙ୍କ ପ୍ରତି ତାଙ୍କର ଗଭୀର ଭକ୍ତି ଅଭିବ୍ୟକ୍ତି ରାଧା-କୃଷ୍ଣ ପ୍ରେମ ପରକ କାବ୍ୟ ମଧ୍ୟ ତାଙ୍କ ଲେଖନୀରୁ ନିଃସୃତ । ହରି, ରାମ, କୃଷ୍ଣ, ବିଷ୍ଣୁ ଜଗନ୍ନାଥ ପ୍ରଭୃତି ନାମ ଭିନ୍ନହେଲେ ହେଁ ସେହି ପରମ ପୁରୁଷ ଏକ ଓ ଅଦ୍ୱିତୀୟ । ଏ ପରିପ୍ରେକ୍ଷୀରେ ରାମଭକ୍ତ ପ୍ରସିଦ୍ଧ ହିନ୍ଦୀ କବି ଗୋସ୍ୱାମୀ ତୁଳସୀ ଦାସ ସ୍ମରଣୀୟ । ତୁଳସୀ ଦାସ ସ୍ୱୀୟ ରାମଚରିତ ମାନସ ଗ୍ରନ୍ଥରେ ରାମ ରୂପୀ ପରଂବ୍ରହ୍ମଙ୍କ ବିଷୟରେ ବର୍ଣ୍ଣନା କରିଛନ୍ତି । ସେହି ପରଂବ୍ରହ୍ମ ବିନା ପାଦରେ ଚାଲନ୍ତି, ବିନା କାନରେ ଶୁଣନ୍ତି, ବିନା ହାତରେ କାର୍ଯ୍ୟ କରନ୍ତି, ବିନା ଶରୀରରେ ସ୍ପର୍ଶ କରନ୍ତି, ବିନା ନୟନରେ ଦେଖନ୍ତି । ଏପରି ପରମ ପୁରୁଷଙ୍କ ସ୍ୱରୂପ ଓ ଆଚରଣ ଅଲୌକିକ ।

'ବ' ଆଦ୍ୟାନୁପ୍ରାସରେ ବିରଚିତ ରାମ ତାରକ ମହାକାବ୍ୟ "ବୈଦେହୀଶ ବିଳାସ" ଭଞ୍ଜ କବିଙ୍କ ଏକ ମହନୀୟ କୃତି । ଏହି ଗ୍ରନ୍ଥର ପ୍ରଥମ ଛାନ୍ଦର ପ୍ରଥମ ପଦ ଦ୍ୱୟରେ ବିଷ୍ଣୁ ସୂର୍ଯ୍ୟ ଓ ଶିବଙ୍କ ବନ୍ଦନା ଶ୍ଳେଷ ମାଧ୍ୟମରେ ପ୍ରକାଶିତ । କବି ବିଷ୍ଣୁ ଓ ଜଗନ୍ନାଥଙ୍କୁ ଏକ ମୂର୍ତ୍ତି ରୂପରେ ଚିତ୍ରଣ କରିଛନ୍ତି । କବିଙ୍କ ଭାଷାରେ :—

"ବନ୍ଦେ ଦିନବାନ୍ଧବ ହରି ଯେ ତମ ଚକ୍ର ଖଣ୍ଡନକାରୀ
ସଦା କମଳନନ୍ଦ ବିସ୍ତାରି ସ୍ୱଭାବେ ଭନ ଯେ,
ବିଭୁ ଅନନ୍ତ ଅଙ୍କ ବିହାରୀ କରି ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂଜେ ସୁମନ ଯେ
ବଇନତେୟ ଯାହା ଅଗ୍ରତେ ସ୍ଥିତ ଯେ,
ବଇକୁଣ୍ଠ ପକ୍ଷେକ ଲୋକ ତୋଷିତ ଯେ,
( ବୈ. ବି - ୧/୧ )

ଏହି ପରବ୍ରହ୍ମ ବିଷ୍ଣୁ ବେହିତ ମତ୍ସ୍ୟ ଅବତାର ଧାରଣ କରି ଶଙ୍ଖାସୁର ସଂହାର କରିଥିଲେ । ବିଷ୍ଣୁଙ୍କର ଆଦ୍ୟ ଅବତାର ହେଉଛି ମୀନ ଅବତାର । ବେଦୋପନିଷଦ୍ ପ୍ରତିପାଦିତ ପରଂବ୍ରହ୍ମଙ୍କୁ ନିଜ କାବ୍ୟ ନୟନରେ ସାକ୍ଷାତ କରିଛନ୍ତି କବି ଉପେନ୍ଦ୍ର ଭଞ୍ଜ । ହଂସ ବା ପରମାତ୍ମା ରୂପରେ ପରଂବ୍ରହ୍ମଙ୍କ ମାହାତ୍ମ୍ୟ ସର୍ବତ୍ର ପ୍ରଖ୍ୟାତ । ସେହି ପୁରୁଷୋତ୍ତମ ବିଷ୍ଣୁ ବିଭୁ ସର୍ବାତ୍ମକ ଓ ସର୍ବ ବ୍ୟାପକ । ତାଙ୍କ ଠାରୁ ବଳି କେହି ନାହିଁ । କୁମ୍ଭୀର ମୁଖରୁ ଗଜେନ୍ଦ୍ର ଉଦ୍ଧାରଣ କରିଥିଲେ ସେହି ବିଷ୍ଣୁ । ଏପରି ନାରାୟଣ ଧର୍ମ ରୂପରେ ବିରାଜମାନ । ବିଷ୍ଣୁ ଓ ଜଗନ୍ନାଥ ଏକ ମୂର୍ତ୍ତି ହୋଇ ଥିବାରୁ ଜଗନ୍ନାଥଙ୍କ ସ୍ୱରୂପ ମଧ୍ୟ ଏଥିରେ ପ୍ରତିପାଦିତ ଭଞ୍ଜ କବି ଦଶାବତାରଧାରୀ ଜଗନ୍ନାଥଙ୍କ ଏପରି ଅଲୌକିକ ମହିମା ଚିତ୍ରଣ କରି ଅଛନ୍ତି ।

ବ୍ରହ୍ମା-ଶିବଙ୍କ ପ୍ରସଙ୍ଗରେ ବୈଦେହୀଶ ବିଳାସର ଅନ୍ୟ ଏକ ଉକ୍ତି ଉଲ୍ଲେଖନୀୟ । ଶ୍ରୀରାମଚନ୍ଦ୍ରଙ୍କ ଗଙ୍ଗା ପାରି ହେବା ସମୟରେ ଧୀବର ଦ୍ୱାରା ପ୍ରଭୁପାଦ- ପ୍ରକ୍ଷାଳନ ପରିପ୍ରେକ୍ଷୀରେ ପ୍ରଭୁଙ୍କ ଭବଗ୍ରାହିତା ସୁସ୍ପଷ୍ଟ । ଏଥିରେ ପ୍ରଭୁଙ୍କ ପତିତପାବନ ବାନା ପ୍ରଖ୍ୟାପିତ ହୋଇଛି । କବିଙ୍କ ଭାଷାରେ:—

"ବଢ଼ାଇଦେଲେ ପୟର ଭବଗ୍ରାହୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି,
ବ୍ରହ୍ମାରେ ଧୌତ ଯେ ପଦ ନୋହିଛି ଶିବ ବିଷାଦ

ନ ପାଇ ଚରଣାମୃତ ପାନକୁ ଇଛି ।
ବିଜ୍ଞାନୀ କୈବର୍ତ୍ତ ଧୋଇଲ,
ବିଶ୍ୱେ ପତିତପାବନ ନାମ ରହିଲ " ।
( ବୈ ବି ୯/୪ )

ଭୃଗୁପତି ପର୍ଶୁରାମଙ୍କ ବୈଷ୍ଣବ ଧନୁ ଧାରଣ ପୂର୍ବକ ଦର୍ପ ଚୂର୍ଣ୍ଣ କଲାପରେ ଶ୍ରୀରାମଚନ୍ଦ୍ର ପୁନରାୟ ଅଯୋଧ୍ୟା ଭବନ-ଅଭିମୁଖେ ଯାତ୍ରା କରିଛନ୍ତି । ଏ ପ୍ରସଙ୍ଗରେ ବାହୁଡ଼ା ଯାତ୍ରା ଓ ରଥର ଅସ୍ଥାୟୀ ଅବସ୍ଥାନ ସୂଚିତ କରାଯାଇଛି । ଜଗନ୍ନାଥଙ୍କର ଏହି ରଥଯାତ୍ରା କାଳରେ ବଡ ଦାଣ୍ଡର ବଳଗଣ୍ଡିଠାରେ କିଛି ସମୟ ଅଟକି ରହନ୍ତି । ପରେ ଜନସମୂହ ଆନନ୍ଦରେ ରଥ ଚାଳନା କରି ଆଗେଇ ନିଅନ୍ତି । ସେପରି ନିଜ ଜନକ ଦଶରଥଙ୍କୁ ସନ୍ତୋଷ ପ୍ରଦାନ କରି ଶ୍ରୀରାମଚନ୍ଦ୍ର ରଥାରୂଢ ହୋଇ ଆଗେଇଛନ୍ତି । ଦିଗ ଦିଗନ୍ତରେ ତାଙ୍କ ଜୟଧ୍ୱନି ପ୍ରସାରିତ ହୋଇଛି । ପୁରୀର ରଥଯାତ୍ରା - ମହୋତ୍ସବରେ ଜଗନ୍ନାଥ ନନ୍ଦିଘୋଷ ରଥରେ ବିରାଜିତ ହୁଅନ୍ତି । ଭଞ୍ଜ କବିଙ୍କ କାବ୍ୟରେ ରାମ ରାବଣ ସଙ୍ଗେ ଯୁଦ୍ଧ କଲା ସମୟରେ ନନ୍ଦିଘୋଷ ରଥରେ ଆରୋହଣ କରିଛନ୍ତି । ମାତଳି ଦ୍ୱାରା ରାମଙ୍କ ନିମିତ୍ତ ଆନୀତ ରଥ ନନ୍ଦିଘୋଷ ବୋଲି କବି ଉଲ୍ଲେଖ କରିଛନ୍ତି ।

ଉପଯୁକ୍ତ ଭାବରେ ବୈଦେହୀଶ ବିଳାସରେ ପ୍ରତିଫଳିତ ଜଗନ୍ନାଥ ତତ୍ତ୍ୱ ବିଶେଷ ରୂପରେ ରଥ-ଯାତ୍ରାର ପ୍ରଖ୍ୟାପକ ହୋଇଛି । ଶ୍ରୀରାମ ତାରକ କାବ୍ୟର ଅଳ୍ପ କେତେକ ସ୍ଥଳରେ ମଧ୍ୟ ଉତ୍କଳୀୟ ଧର୍ମ ଓ ସାଂସ୍କୃତିକ ର ସମାବେଶ ମାଧ୍ୟମରେ ଭଞ୍ଜକବି ଜଗନ୍ନାଥଙ୍କ ପ୍ରତି ଭକ୍ତିମତା ଓ ଆଧ୍ୟାତ୍ମନିଷ୍ଠା ପ୍ରକାଶ କରିଛନ୍ତି ।

## କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ :—

ଆଲୋଚ୍ୟ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପ୍ରଥମ ଛାନ୍ଦରେ କବି ଶ୍ରୀଜଗନ୍ନାଥଙ୍କର ପଦ ବନ୍ଦନା କରିଛନ୍ତି । କବିଙ୍କ ବିଖ୍ୟାତ କାବ୍ୟ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ରେ ଶ୍ରୀଜଗନ୍ନାଥଙ୍କ ପ୍ରଶସ୍ତି ବହୁ ବ୍ୟାପକ । ଏହି କାବ୍ୟର ଆଦ୍ୟ ଛାନ୍ଦରେ ଶ୍ରୀଜଗନ୍ନାଥ କ୍ଷେତ୍ରର ମାହାତ୍ମ୍ୟ ଠାରୁ ଆରମ୍ଭକରି ଶ୍ରୀଜଗନ୍ନାଥଙ୍କ ଦେବସ୍ନାନ ପୂର୍ଣ୍ଣିମା ଦିନ ସ୍ନାନ ମଣ୍ଡପକୁ ପହଣ୍ଡି ବିଜେ, ସ୍ନାନ ଯାତ୍ରା, ହାତୀବେଶ ପର୍ଯ୍ୟନ୍ତ ଅତ୍ୟନ୍ତ ଚିତ୍ତାକର୍ଷକ ଭାବେ ବର୍ଣ୍ଣିତ ହୋଇଛି ।

ସ୍ନାନଯାତ୍ରା, ଶ୍ରୀ ଗୁଣ୍ଡିଚାଯାତ୍ରାର ଅଧୀବାସ ସମ୍ବନ୍ଧୀୟ ଯାତ୍ରା । ଗୁଣ୍ଡିଚା ବା ରଥଯାତ୍ରାରେ ଉଦ୍ଦିଷ୍ଟ ଦେବ ବିଗ୍ରହଙ୍କର ନାମ 'ବାମନ' ହୋଇଥାଏ । ଏହା ଶାସ୍ତ୍ର ସମ୍ମତ । ଏହି ଶାସ୍ତ୍ରୋଚିତ ରହସ୍ୟ ଭେଦ କରିବାକୁ ଯାଇ ନୈଷଧକାର ଶ୍ରୀହର୍ଷ ସ୍ନାନ ଯାତ୍ରା ନିମନ୍ତେ ଭଗବାନଙ୍କୁ ମଧୁସୂଦନ ନାମ ରୂପ ବା ଚନ୍ଦନ ଯାତ୍ରାପାଇଁ ପ୍ରସିଦ୍ଧ ବୋଲି ସୂଚାଇଛନ୍ତି ।

"ଦୋଳେ ଚ ଦୋଳଗୋବିନ୍ଦଂ, ଚାପେ ବ ମଧୁସୂଦନଂ
ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ" ।

ଜ୍ୟେଷ୍ଠ ପୂର୍ଣ୍ଣିମାର ପୂର୍ବଦିନ ରାତ୍ରିପାହାନ୍ତାରୁ ସେବକ ମାନେ ଆନନ୍ଦରେ ମହାପ୍ରଭୁଙ୍କ ପାଖରେ ମିଳନ୍ତି । ସିଂହଦ୍ୱାର ହରି ହରି ଧ୍ୱନିରେ ପ୍ରକମ୍ପିତ ହୁଏ । ଶ୍ରୀ ଠାକୁରଙ୍କ ବିଷୟ ନିମିତ୍ତ ପାଟ ମୁଚୁଳାଦି ପଡେ । ମେଘା, ମୃଦଙ୍ଗ, ମର୍ଦ୍ଦଳ ସାଙ୍ଗକୁ ଝାଞ୍ଜି ଭେରି ଖଞ୍ଜଣି ପ୍ରଭୃତି ବାଦ୍ୟରେ ଶ୍ରୀମନ୍ଦିର ପ୍ରକମ୍ପିତ ହୁଏ । ମୋ ଉପରେ ଜଗନ୍ନାଥ ବିଜେ କରିବେ ଏହା ଭାବି ଧରଣୀ ଉତ୍ଫୁଲ୍ଲିତା ଧରିତ୍ରୀ ଆନନ୍ଦିତ ହୁଏ । ଏହି ସମୟରେ ଉଦ୍ଦିଷ୍ଟ ଦେବ ବିଗ୍ରହ ମାନଙ୍କର ନାମ ଯଥାକ୍ରମେ ମଧୁସୂଦନ ଓ ବାମନ ହୋଇଥାଏ ଏହା ଶାସ୍ତ୍ର ସମ୍ମତ । ମନ୍ଦିରର ପଣ୍ଡାମାନେ ଜଗନ୍ନାଥଙ୍କୁ

ଗୁଣ୍ଡଣୀହାତୀ, ବଳଦେବଙ୍କୁ ଐରାବତ ହାତୀ ଭଳି ଝୁଲାଇ ଝୁଲାଇ ପହଣ୍ଡି ବିଜେ କରନ୍ତି । ପଣ୍ଡାମାନେ ବିଅଁ ଦୁଇଙ୍କୁ ଏପରି ଭାବରେ ଚନ୍ଦନ ଚର୍ଚ୍ଚିତ କଲେଯେ ସେମାନେ ହାତୀ ତୁଲ୍ୟ ଚନ୍ଦନ ପଙ୍କରେ ଘାଣ୍ଟି ହେବା ପରି ଜଣାଗଲା । ଏଠାରେ ଜଗନ୍ନାଥ, ବଳଭଦ୍ର ଚନ୍ଦନ ପଙ୍କରେ ଘାଣ୍ଟି ହୋଇ ଭକ୍ତ ମାନଙ୍କ ପାପ ପଙ୍କିଳ ପଦ୍ମବନ ଧ୍ୱଂସ କରନ୍ତି ।

ଏହିପରି ସ୍ନାନ ମଣ୍ଡପସ୍ଥିତ ସିଂହାସନରେ ଭାଇ ଭଉଣୀ ସହିତ ପ୍ରଭୁ ବିଜେ କଲେ । ମର୍ଦ୍ଦଳି, ତାଳ, କଂସାଳ ,କର୍ଣ୍ଣାଳ ବାଜି ଉଠିଲା । ଯାତ୍ରୀଙ୍କ ମୁଖ ନିସୃତ ହୁଳ ହୁଳି ଧ୍ୱନିରେ ଦିଗନ୍ତ ମୁଖରିତ ହେଲା । ନାଗ, ନର କିନ୍ନର, ଗନ୍ଧର୍ବ ସମସ୍ତେ ସୁବର୍ଣ୍ଣ କଳସରେ ଜଳ ଧରି ରହିଁଛନ୍ତ, ବ୍ରାହ୍ମଣ ମାନେ ଶ୍ରୀମୁଖ ମଣ୍ଡଳରେ ଜଳ ଢାଳିଲେ । ମେରୁ ପର୍ବତର ହୀରା, ମର୍କତ ଓ ସୁବର୍ଣ୍ଣ ଶୃଙ୍ଗ ମାନଙ୍କରୁ ଯଥାକ୍ରମେ ଗଙ୍ଗା, ଯମୁନା ଓ ହରିତାଳ ଧାର ଖସି ଆସୁଥିବା ପରି ଜଣାଗଲା । ତାହା ଦର୍ଶନ କରୁ କରୁ ଦର୍ଶକ ମାନଙ୍କ ଚକ୍ଷୁରୁ ଦରିଦ୍ରତା ଦୂର ହେଲା । କବିଙ୍କ ଭାଷାରେ:—

" କି ମେରୁ ହୀର ମାରର ହେମ ଶୃଙ୍ଗୁଖସି
ଜାହ୍ନବୀ ଯମୁନା ହରିତାଳ ଧାର ଆସି ଯେ
ବିଲପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ତିନି ଶୃଙ୍ଗୁକି ଜାତ ତରଳ ରଜତ ଯେ
ଦେଖିଲା ଆଖିରେ ଦରିଦ୍ରତା ନ ରଖିଲା
ମନ ହିଁ ଦୁଃହଦ୍ର ଦୁଃଖମାନ ଉପେକ୍ଷିଲା ହେ" ।

( କୋ ବ୍ର ସୁ-୧ମ-୩୨ପଦ )

## ରସିକ ହାରାବଳୀ—

ରସିକ 'ହାରବଳୀ'ର ମଙ୍ଗଳା ଚରଣରେ କବି ଶ୍ରୀଜଗନ୍ନାଥଙ୍କର ବନ୍ଦନା କରି ଉଲ୍ଲେଖ କରିଛନ୍ତି:-

" ଜୟ ଜୟ ଜଗନ୍ନାଥ ଦାରୁ ରୂପଧାରୀ,
ନୀଳ ଗିରୀଶ ଗିରୀଶ ବନ୍ଦନୀୟ ହରି
ମହାବଳ ବଳ ଅବରଜ ଭଦ୍ରାଗଜ,
ଗରୁଡ଼ାସନ ସନକ ପୂଜ୍ୟ ଚତୁର୍ଭୁଜ
ନୀରଜ ସୁନ୍ଦର ଦର ହର ହରଷଦ
ଶମନ ମନରେ ଜାତ କରେ ମହାଖେଦ " ।

ଏହି କାବ୍ୟର ତୃତୀୟ ଛାନ୍ଦର ବର୍ଣ୍ଣନା ଆହୁରି ବିଲକ୍ଷଣ । ସେଥିରେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା ସହିତ ଚନ୍ଦନ ଯାତ୍ରାର ଏକ ମନୋମେ ଚିତ୍ର କବି ଉପସ୍ଥାପନ କରିଛନ୍ତି ଭଞ୍ଜ ସାହିତ୍ୟରେ ରଥଯାତ୍ରାର ବର୍ଣ୍ଣନା ଅନେକ ସ୍ଥଳରେ ସୂଚୀତ ହୋଇଛି । ତାଙ୍କର ସମସାମୟିକ କବି ଦୀନକୃଷ୍ଣ ଦାସ, ଜଗ ମୋହନ ଛାନ୍ଦ ଲେଖି ଥିଲେ । ତହିଁରେ ରଥଯାତ୍ରାର ବିସ୍ତୃତ, ମନୋଜ୍ଞ ଏବଂ ଛବିଳ ବର୍ଣ୍ଣନା ଦେଖିବାକୁ ମିଳେ ।

ଉପେନ୍ଦ୍ରଭଞ୍ଜ 'ସୁଭଦ୍ରା ପରିଣୟ' ର ମୂଳରେ ମଧ୍ୟ ଶ୍ରୀକ୍ଷେତ୍ର ଏବଂ ଜଗନ୍ନାଥଙ୍କର ଗୌରବ କୀର୍ତ୍ତନ କରିଛନ୍ତି । ମାତ୍ର ତାହା କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବର୍ଣ୍ଣନା ପରି ଏତେ ବିସ୍ତୃତ ନୁହେଁ । ତେବେ, ଗୁଣ୍ଡିଚ ଯାତ୍ରା ଏହି ମହାକବିଙ୍କ ମନକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

## କୁଞ୍ଜ ବିହାର:—

ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ କାବ୍ୟ କୁଞ୍ଜବିହାର ଏକ କୃଷ୍ଣଭକ୍ତି ମୂଳକ କାବ୍ୟ ହେଲେ ମଧ୍ୟ ଏହାର ମଙ୍ଗଳାଚରଣରେ କବି ଶ୍ରୀ ଜଗନ୍ନାଥଙ୍କୁ ବିନମ୍ର ନିବେଦନ କରି ଗାଇଛନ୍ତି:-

"ଜୟ ଜୟ ଜଗନ୍ନାଥ ହେ ଅନାଥ ନାଥ
ନୀଳଗିରି ସୁନ୍ଦର
ତନୁ ଘନ ସାର ଗୋହେ ଘନ ସାର ଦରଶନ ଦରଧର
ପ୍ରଭୁ ହେ । ପଦ୍ମ ପଦ୍ମ ମୁଖ ଭ୍ରମର ।
ହର ମନୋହର ହର ପର - ସର ଦର୍ପ ହର " ।
( ୧/୧ )

## ନୀଳାଦ୍ରୀଶ ଚଉତିଶା :—

ଉପେନ୍ଦ୍ରଭଞ୍ଜ ସ୍ୱରଚିତ ନୀଳାଦ୍ରୀଶ ଚଉତିଶାରେ ମଧ୍ୟ ଏତାଦୃଶ ପବିତ୍ର ବିଷୟବସ୍ତୁ ଶାସ୍ତ୍ର ସମ୍ମତ ରୀତିରେ ପରିବେଷଣ କରିଛନ୍ତି । ସ୍କନ୍ଧପୁରାଣରୁ ଜଣାଯାଏ ଯେ ଦ୍ୱାରିକା ରାଜ୍ୟ ପାଟରାଣୀ ସତ୍ୟଭାମା ଏବଂ ରୁକ୍ମିଣୀ ରାଧାକୃଷ୍ଣ ପ୍ରେମରହସ୍ୟ ଆଦୌ ବୁଝି ପାରିଲେନାହିଁ । ସେମାନେ ଯେହି ଦୁର୍ଲ୍ଲଭ ତତ୍ତ୍ୱ ବୁଝାଇବା ପାଇଁ ରୋହିଣୀଙ୍କୁ ଜିଜ୍ଞାସା କଲେ । ଜଗନ୍ନାଥ ତ ସର୍ବବ୍ୟାପୀ, ସର୍ବତ୍ର ବିରାଜିତ ଅଛନ୍ତି । ଅପ୍ରକଟ ରହସ୍ୟ ପ୍ରକଟନ ବେଳେ ସେ ଯଦି ପହଞ୍ଚି ଯିବେ ତେଣୁ ସୁଭଦ୍ରାଙ୍କୁ ଦ୍ୱାସ୍ଥ ରୂପେ ଦ୍ୱାର ଦେଶରେ ରଖାଗଲା । ରୋହିଣୀ ସେହି ଗୁପ୍ତ ତଥ୍ୟ ସତ୍ୟଭାମା ଏବଂ ରୁକ୍ମିଣୀଙ୍କୁ କହିବାକୁ ଆରମ୍ଭ କରୁ କରୁ ସହସା ବଳଭଦ୍ର ଏବଂ ଜଗନ୍ନାଥ ସମ୍ମୁଖରେ ଦେଖାଗଲେ । ସମସ୍ତେ ଘୋର ବିପଦର ସମ୍ମୁଖୀନ ହେଲେ ଭବୁ ଭବୁ, ଜଗନ୍ନାଥ ଓ ବଳଭଦ୍ର ସୁଭଦ୍ରା କଠିନ କାଠ ପାଲଟି ଗଲେ । ସେମାନେ ଚତୁର୍ଦ୍ଧାମୂର୍ତ୍ତି ରୂପେ ଦେଖାଯାଉ ଥାଉ, ମହର୍ଷି ନାରଦ ପହଞ୍ଚି ଯାଇ କହିଲେ — ଏହି ଚତୁର୍ଦ୍ଧା ମୂର୍ତ୍ତିକୁ ଶ୍ରୀକ୍ଷେତ୍ରସ୍ଥ ଶ୍ରୀ ମନ୍ଦିର ରେ ସ୍ଥାପନ କର । କବିଙ୍କ ଭାଷାରେ :—

" ଘଟଣ ଦେଖିବାରେ ଘନ ଘୋଟୁଛି ବାରେ
ଘେନିଛି ପ୍ରଭୁ ଗୂଢ଼ ତନୁ,
ଘଟସୂତ୍ର ଭିଆଣି ଘର କୋଣେ ରୋହିଣୀ
ଘୋଟବା ରାଧାତତ୍ତ୍ୱ ଦିନୁହେ ନୀଳାଦ୍ରୀଶ
ଘରେ ସେ ଅପ୍ରକଟ ଛଟ
ଘଡ଼ଏ ନ ସହିଲେ ହଟ "
( ନୀଳାଦ୍ରୀଶ ଚଉତଶା )

କେତେକ ଆଲୋଚକ ନୀଳାଦ୍ରୀଶ ଚଉତିଶାକୁ କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କର ବୋଲି କହିବା ବେଳେ ଡଃ ଦାଶରଥି ଦାସ ଏହା ଉପେନ୍ଦ୍ରଭଞ୍ଜଙ୍କର ନୁହେଁ ବୋଲି ଯୁକ୍ତି ଉପସ୍ଥାପନା କରିଛନ୍ତି ।

ଏହି ଭଳି ଭବରେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟଠାରୁ ଆରମ୍ଭ କରି ବିଭିନ୍ନ ଚଉତିଶା, ଚଉପଦୀ ଆଦିକୁ ଆଲୋଚନା କଲେ ତନ୍ମଧ୍ୟରେ ଶ୍ରୀଜଗନ୍ନାଥଙ୍କର ପରମ ପବିତ୍ର ଶ୍ରୀକ୍ଷେତ୍ର ବର୍ଣ୍ଣନା ସହିତ ବିଭିନ୍ନ ଯାନି ଯାତ୍ରା ଓ ସେ ସମୟର ଦୃଶ୍ୟାବଳୀକୁ କବି ଅତ୍ୟନ୍ତ ସୁନ୍ଦର ତଥା ଜୀବନ୍ତ ଭବରେ ବର୍ଣ୍ଣନା କରିଥିବାର ଦେଖିବାକୁ ମିଳେ ।

ଏହି ବର୍ଣ୍ଣନା ମଧ୍ୟରେ କବି ପ୍ରାଣର ଆକୁଳତା ବ୍ୟାକୁଳତା ସହିତ ଉତ୍କଳୀୟତାର ପ୍ରାଣ ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ । କେବଳ ସେତିକି ନୁହେଁ ଭଞ୍ଜ ଭରତୀରେ ଶ୍ରୀ ଜଗନ୍ନାଥ ଏକ ମୂର୍ତ୍ତିମନ୍ତ ପ୍ରେରଣାର ଉତ୍ସ ଭବରେ ରାମ ତାରକ ସିଦ୍ଧ ଉପେନ୍ଦ୍ରଭଞ୍ଜଙ୍କ ଦୃଷ୍ଟି-ପଥ.ରୁଢ଼ ହୋଇଛନ୍ତି ତାହା ଅନସ୍ୱୀକାର୍ଯ୍ୟ ।



# ● ଉପେନ୍ଦ୍ର ଭଞ୍ଜଙ୍କ 'କାମିନୀ ଚଉତିଶା'

✱ ଶ୍ରୀମତୀ ଜୟନ୍ତୀ ମିଶ୍ର

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଅଶେଷ ଚଉତିଶା ରଚନା କରିଥିବା କଥା ସ୍ୱରଚିତ 'ଚିତ୍ରକାବ୍ୟ ବନ୍ଧୋଦୟ' ଗ୍ରନ୍ଥରେ ସ୍ୱୀକାର କରି କହିଛନ୍ତି :—

" ଅଶେଷ ଚଉତିଶା ଚଉପଦୀ
ତାହା କେତେ ଯେ କହିବି ସମ୍ପାଦି । " (୧୦ ପଦ)

ସେ ଅଶେଷ ଚଉତିଶା, ଚଉପଦୀ ଚିତ୍ରକାବ୍ୟ ପୂର୍ବରୁ ରଚନା କରିଥିବା କଥା କହିବା ଦ୍ୱାରା ଅନୁମିତ ହୁଏ ଯେ ସେ କେତେଗୁଡ଼ଏ ଚଉତିଶା, ଚଉପଦୀ ଆଦି ପ୍ରଥମେ ରଚନା କରିବା ପରେ କାବ୍ୟ ରଚନାରେ ମନୋନିବେଶ କରିଥିଲେ । ତେଣୁ ଏଗୁଡ଼ିକ ମଧ୍ୟରୁ କେତେକ ପ୍ରାରମ୍ଭିକ ରଚନା ହୋଇଥିବାରୁ ଏଥିରେ ଶବ୍ଦାଡମ୍ବର ତଥା ଅଳଙ୍କାରର ପ୍ରାଚୁର୍ଯ୍ୟ ବିଶେଷ ଭାବରେ ପରିଲକ୍ଷିତ ହୋଇପାରେନି । ପୁନଶ୍ଚ କବି ସମ୍ରାଟ ନିଜର କାବ୍ୟ ନାୟିକାକୁ ଯେପରି ଶବ୍ଦାଡମ୍ବର ତଥା ଅଳଙ୍କାରାଦି ଦ୍ୱାରା ଭୂଷିତ କରିବା ପାଇଁ ଆଗ୍ରହୀ ହୋଇଛନ୍ତି ଏ ସମସ୍ତ ପ୍ରାରମ୍ଭିକ ରଚନା ମଧ୍ୟରେ ସେପରି ଆଗ୍ରହ ପ୍ରଦର୍ଶନ ନ କରିବା ସ୍ୱାଭାବିକ୍ । କିନ୍ତୁ ଏହି ସମୟର ଚଉତିଶା ଓ ଚଉପଦୀ ଆଦିରେ କବି ତାଙ୍କ ହୃଦୟର ଭାବକୁ ପରିବେଷଣ କରିବା ନିମନ୍ତେ ବିଶେଷ ଆଗ୍ରହୀ ଥିବା ପରି ମନେହୁଏ । ତାଙ୍କର ବହୁ ଚଉତିଶା ଓ ଚଉପଦୀ ଅଦ୍ୟାବଧି ଲୋକଲୋଚନକୁ ଆସିପାରିନାହିଁ କିମ୍ବା ଏଗୁଡ଼ିକୁ ସଂଗ୍ରହ ତଥା ସମ୍ପାଦନ କରିବା ନିମନ୍ତେ ବିଶେଷ ଉଦ୍ୟମ ହୋଇନାହିଁ କହିଲେ ଚଳେ ।

ଏହି 'କାମିନୀ ଚଉତିଶା' ଟି ପୁରୀ ଜିଲ୍ଲାର ବୀରଗୋବିନ୍ଦପୁର ନିବାସୀ ସ୍ୱର୍ଗତ ଗୋପାଳ ଚନ୍ଦ୍ର ମିଶ୍ରଙ୍କ ଘରୁ ଲୋହିତ ସାହିତ୍ୟ ସଂପଦ ଦ୍ୱାରା ସଂଗୃହୀତ । ଏହାର ଅନ୍ୟ ଏକ ନକଲ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ନମ୍ବର ଓ.ଏଲ୍. ୩୧୬ ଢ. ରୁ ମିଳିବା ପରେ ଦୁଇଟିଯାକ ପାଠକୁ ମିଳାଇ ଏକ ଶୁଦ୍ଧ ରୂପ ପ୍ରଦାନ ନିମନ୍ତେ ଉଦ୍ୟମ କରଯାଇଛି । ଦୁଇଟିଯାକ ପାଠରେ ବିଶେଷ ତାରତମ୍ୟ ନଥିବାରୁ ଏହା ଗୋଟିଏ ବଂଶ ପୋଥିର ନକଲ ଭଳି ମନେହୁଏ ।

ଏଥିରେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନାୟକର ବିରହ ଭାବନାକୁ ଚଉତିଶା ରୀତିରେ ୯ଟି ପଦରେ ବର୍ଣ୍ଣନା କରିଛନ୍ତି । 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ ଟି ଅକ୍ଷର ନିୟମକୁ ରକ୍ଷା କରିଥିଲେ ମଧ୍ୟ 'ସ'; 'ହ' ଓ 'କ୍ଷ' କୁ ଦୁଇ ଦୁଇଥର ପ୍ରୟୋଗ କରିବାବେଳେ 'ଷ'କୁ ଆଦୌ ପ୍ରୟୋଗ କରିନାହାନ୍ତି । 'ଷ' ସ୍ଥାନରେ 'ହ'ର ପ୍ରୟୋଗ କରିଛନ୍ତି । ଏଭଳି ପ୍ରୟୋଗ କବିଙ୍କର ଯମକରାଜ ଚଉତିଶାରେ ପରିଦୃଷ୍ଟ ହେଲେ ମଧ୍ୟ ଲାବଣ୍ୟବତୀ ( ୩୪ ଛାନ୍ଦ ), କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ( ୧୬ ଛାନ୍ଦ ) ଓ ଚିତାଉ ଚଉତିଶାରେ ହୋଇନାହିଁ । ପୁନଶ୍ଚ ଏହି ଚଉତିଶାରେ 'ଙ' ଓ 'ଞ' ସ୍ଥାନରେ 'ନ' ଓ 'ଣ' ସ୍ଥାନରେ 'ଅ' ରେ ପଦ ଆରମ୍ଭ କରିଛନ୍ତି । ଏହି ନିୟମ ସେ ଲାବଣ୍ୟବତୀ କାବ୍ୟର ୩୪ ଛାନ୍ଦରେ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ୧୬ ଛାନ୍ଦରେ ଓ ଚିତାଉ ଚଉତିଶାରେ ମଧ୍ୟ ରକ୍ଷା କରିଛନ୍ତି । କିନ୍ତୁ ଯମକରାଜ ଚଉତିଶାରେ 'ଙ' ଓ 'ଞ' ସ୍ଥାନରେ 'ନ' ପ୍ରୟୋଗ କରିବା ସମୟରେ 'ଣ' ସ୍ଥାନରେ 'ଏ' ଓ 'ଅ' କୁ ଗ୍ରହଣ କରିଛନ୍ତି ।

ଭଷା ଦୃଷ୍ଟିରୁ ବିବେଚନା କଲେ ଏହା ଅତ୍ୟନ୍ତ ସରଳ ତଥା ସାବଲୀଳ ଭଷାରେ ରଚିତ ହୋଇଥିବାରୁ ଏହାର ପିତୃତ୍ୱ ଉପେନ୍ଦ୍ର ଭଞ୍ଜଙ୍କୁ ଦେବା ନିମନ୍ତେ କେତେକ ଅନିଚ୍ଛା ପ୍ରକାଶ କରିପାରନ୍ତି । କିନ୍ତୁ ଉପେନ୍ଦ୍ର ଭଞ୍ଜ କେତେକ ଚଉତିଶା ଓ ଚଉପଦୀକୁ ଏଭଳି ସରଳ ଭଷାରେ ରଚନା କରିଥିବାରୁ ଓ ଏହା ଯଦି ତାଙ୍କର ପ୍ରାରମ୍ଭିକ ରଚନା ପର୍ଯ୍ୟାୟଭୁକ୍ତ ହୋଇଥାଏ ତେବେ ଏଭଳି ଅନିଚ୍ଛା ଅମୂଳକ ହେବାର ସମ୍ଭାବନା ରହିଛି । ସୁଧୀ ପାଠକଙ୍କ ବିବେଚନା ନିମନ୍ତେ ଚଉତିଶାଟି ନିମ୍ନରେ ପ୍ରଦାନ କରାଗଲା ।

" କାମିନୀ ମନ ମୋର ମୋହିନୀ କଳା ।
ଖଞ୍ଜନ ନେତ୍ରୀ ମୋର ନେତ୍ର ପିତୁଳା ଯେ ।
ଗଜ ଗମନୀ ଗୁଣ ଗୁଣି ମୁଁ ପୁଣି ।
ଘନ ଜଘନୀ ଉଚ୍ଚ କୁଚ ସୁସ୍ତନୀ ଯେ । ( ୧ )

ନାରୀ ରତନ ଆରେ ନବ ବୟସୀ
ଙ୍ଘୁଁ ତ ନାହୁଁ ମୋତେ ଅଳପ ହସି ଯେ ।।
ଛାଡବି ସିନା ପ୍ରାଣ, କଲେ ନିରାଶ ।
ଜୀବନ ବନ୍ଧ ହସି ଜୀବନ ଭଷରେ ।। ( ୨ )

ଝୁରେଟି ରାତ୍ର ଦିବା ତୋହରି ପାଇଁ ।
ନାଗର ମୋହୋ ପ୍ରାଣ ରହିବ ନାହିଁ ଯେ ।।
ଟିକିଏ ନ ଦେଖିଲେ ଚନ୍ଦ୍ରମା ମୁଖ ।
ଠୁଳେ ମଦନ ରହି ଦେଉଛି ଦୁଃଖରେ ।। ( ୩ )

ଡୋଳା ଖେଳାଇ ଦୂରୁ ଦେଖିଲେ ହସୁ ।
ଢାଳିଣ ଶ୍ରୀଅଙ୍ଗ କି ଆଗରେ ବସୁ ଯେ ।।
ଅଳପ କରି ମୁଖେ ବସନ ଦେଇ ।
ତରୁଣୀ ଭୃଙ୍ଗ ବାଣୀ କହୁ ଗେଲାଇ ଯେ । ( ୪ )

ଥୟ ନୋହଇ ମତି ଦେଉ ତୋ ଗତି ।
ଦେଖି ବଢାଇ ଦେଖୁ ଦେଖୁ ପୀରତି ଯେ ।।
ଧନ୍ୟ ସୁଅଙ୍ଗ କଳି ତୋହ ସଙ୍ଗର ।
ନଳିନୀବର ଯେବେ କଲୁ ଅନ୍ତର ଯେ ।। ( ୫ ।।

ପୋଡୁ ମୋ କର୍ମ କଲି ବିଷମ ଦୋଷ ।
ଫୁଲୁଣା ହୋଇ ସଖି ! ନ କର ରୋଷ ଯେ ।।
ବଲ୍ଲଭି ! ପୂର୍ବ ସ୍ନେହ କେଣେ ତୋ ଗଲା ।
ଭଲା ବିଧାତା ଏତେ ସୁଖ ଭଙ୍ଗିଲା ଯେ ।। ( ୬ ।।

ମୋ'ଠାରେ ମନ ତୋର ଅଛି କି ନାହିଁ ।
ଯଥାର୍ଥ କରି କହ ମୋ ପ୍ରାଣ ସହି ଯେ ।।
ରାତ୍ର ଦିବସ ମୋର ତୋହରି ଚିନ୍ତା ।
ଲଳନା ବର ବିନୁ ନାହିଁ ରଖନ୍ତା ଯେ ।। ( ୭ )

ବୋଲ ଯେ ତୁମ୍ଭର କେତେ ଯୁବତୀ ନାହିଁ ।
ଶରଧା ମୋତେ ଯେତେ କଲ କିଆଇଁ ଯେ ।।
ସତ ମୁଁ କହୁଅଛି ନିୟମ କରି ।
ସ୍ୱପନେ ନ ରୁଚଇ ଅନ୍ୟ ସୁନ୍ଦରୀ ଯେ ।। ( ୮ )

ହରଷ ମୁଖି ! ଆରେ ଗଜ ଗମନୀ ।
ହରଷେ ବୋଲେ ବସ ପୃଥୁଳସ୍ତନୀ ଯେ ।।
କ୍ଷମା କରି ମୋ ଦୋଷ ହୁଅ ସନ୍ତୋଷ
କ୍ଷେମେ କହଇ ଉପଇନ୍ଦ୍ର ନରେଶ ଯେ ।। " (୯)

# ଉପେନ୍ଦ୍ର ଭଂଜକୃତ 'ରସ ମଞ୍ଜରୀ' : ଏକ ଅନୁଶୀଳନ

* ଅଧ୍ୟାପିକା ସୁଚିତ୍ରା ମିଶ୍ର
ଓଡ଼ିଆ ବିଭାଗ, ନିରଞ୍ଜନ ମହାବିଦ୍ୟାଳୟ, ଆସ୍କା, ଗଞ୍ଜାମ ।

ଗୀତିଯୁଗୀୟ-କାବ୍ୟ - ପରମ୍ପରାନୁଯାୟୀ ତାହାର ଗୁରୁତ୍ଵ ଏବଂ ବୈଶିଷ୍ଟ୍ୟର ଅବଲମ୍ବନରେ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟମାଳା ବିପୁଳକର ତଥା ବିଶାଳ ଆକୃତିର ଅଧିକାରୀ ହେବା ସଙ୍ଗେ ସଙ୍ଗେ ମନୋହରୀ ପ୍ରକୃତିର ପରିଚାୟକ ହୋଇପାରିଛି । ସେହି କାବ୍ୟ ପରମ୍ପରାରେ ତତ୍‌କାଳୀନ ସାମନ୍ତୀୟ ବାତାବରଣର ଦୃଷ୍ଟି ଦେଇ ଗୁଣ ଏବଂ ପରିମାଣ ଦୃଷ୍ଟିରୁ ଉପେନ୍ଦ୍ର ଭଞ୍ଜ ଯେଉଁସବୁ କାବ୍ୟଗ୍ରନ୍ଥ ସୃଷ୍ଟି କରି ଗଲେ, ତନ୍ମଧ୍ୟରୁ 'ରସ ମଞ୍ଜରୀ' କାବ୍ୟଟି ଅନ୍ୟତମ । ଏହା ଏକ ଅପ୍ରକାଶିତ କାବ୍ୟ ।

ଓଡ଼ିଆ ଗ୍ରନ୍ଥର ତାଲିକା ମଧ୍ୟରେ 'ରସ ମଞ୍ଜରୀ' ର ନାମକୁ ଅନ୍ତର୍ଭୁକ୍ତ କରିଥିବା ପ୍ରଥମ ଆଲୋଚକ ହେଉଛନ୍ତି ଜେ. ଲଙ୍ଗ୍ [୧୮୫୯], ତାଙ୍କ ପରେ ବଙ୍ଗୀୟ ଆଲୋଚକ ରଙ୍ଗଲାଲ ୧୮୬୪ ଖ୍ରୀଷ୍ଟାବ୍ଦରେ ଏହାକୁ ଉପେନ୍ଦ୍ରଙ୍କ ରଚନା ରୂପେ ବଙ୍ଗଳା ଭାଷାରେ ରଚିତ 'ଉପେନ୍ଦ୍ର ଭଞ୍ଜ' ଆଲୋଚନାରେ ସ୍ୱୀକୃତି ପ୍ରଦାନ କଲେ । ପରବର୍ତ୍ତୀ ସମୟରେ ହଣ୍ଟର [୧୮୭୨], ବୀମସ [୧୮୭୨], ମନମୋହନ ଚକ୍ରବର୍ତ୍ତୀ [୧୮୯୮], ତାରିଣୀ ଚରଣ ରଥ [୧୯୧୨], ବିଜୟ ଚନ୍ଦ୍ର ମଜୁମ୍‌ଦାର [୧୯୨୩], ବିନାୟକ ମିଶ୍ର [୧୯୨୮], ଭଗୀରଥି ମହାପାତ୍ର- [୧୯୩୪], ଶ୍ରୀଧର ଦାସ [୧୯୩୮], ଡଃ. ହରେକୃଷ୍ଣ ମହତାବ [୧୯୪୯], ଚିନ୍ତାମଣି ଚରଣ ପଟ୍ଟନାୟକ [୧୯୫୦], ଅନନ୍ତ ପଦ୍ମନାଭ ପଟ୍ଟନାୟକ [୧୯୫୯], ସୂର୍ଯ୍ୟ ନାରାୟଣ ଦାସ [୧୯୬୪]; ଦାମୋଦର ଦାସ- [୧୯୬୭], ଗୌରୀକୁମାର ବ୍ରହ୍ମା [୧୯୭୪], ରମେଶ ଦାସ [୧୯୭୯], ଛବି ନାୟକ [୧୯୮୪], ରାମମୋହନ ଜେନା [୧୯୮୬], ପ୍ରଫୁଲ୍ଲ କୁମାର ଦାସ- [୧୯୮୬], ସୁରେନ୍ଦ୍ର ମହାରଣା [୧୯୮୮], ମାଗୁଣି ଦାଶ [୧୯୮୯] ପ୍ରଭୃତି ବହୁ ବରେଣ୍ୟ ଆଲୋଚକ ସ୍ୱକୀୟ ପୁସ୍ତକରେ ଓଡ଼ିଆ ସାହିତ୍ୟ ସଂପର୍କିତ ଆଲୋଚନା ତଥା ଭଞ୍ଜ କୃତିସମୂହ ପର୍ଯ୍ୟାଲୋଚନାର ପୃଷ୍ଠପୀଠିକାରେ 'ରସ ମଞ୍ଜରୀ' କାବ୍ୟକୁ ଉପେନ୍ଦ୍ର ଭଞ୍ଜଙ୍କ ଅପ୍ରକାଶିତ ଗ୍ରନ୍ଥରୂପେ ସ୍ୱୀକାର କରିଥିବା ଦୃଷ୍ଟିଗୋଚର ହୁଏ ।

କାବ୍ୟର ନାମକରଣରୁ ଏହା ସ୍ଥୂଳତଃ କେତେକଙ୍କ ମନରେ କାଳ୍ପନିକ କାବ୍ୟର ଭ୍ରମ ସୃଷ୍ଟି କଲେ ହେଁ ଅନୁଶୀଳନରୁ ଜଣାଯାଏ ଯେ ଏହା ଏକ ଅଳଙ୍କାର ଗ୍ରନ୍ଥ । ଅନ୍ୟାନ୍ୟ ରୀତିକାବ୍ୟ ଧାରାରେ ଆଳଙ୍କାରିକ - ନିୟମ ରକ୍ଷା କରି କବି ଉପେନ୍ଦ୍ର 'ରସ ମଞ୍ଜରୀ' କାବ୍ୟର ଆଦ୍ୟ - ମଙ୍ଗଳାଚରଣ ପର୍ଯ୍ୟାୟରେ କୃଷ୍ଣ ଏବଂ ଚନ୍ଦ୍ରଙ୍କ ବନ୍ଦନା ଶ୍ଳେଷାତ୍ମକ ଭାବରେ କରିଛନ୍ତି । କାବ୍ୟର ବସ୍ତୁ ନିର୍ଦ୍ଦେଶ କରି କବି କହିଛନ୍ତି —

" କରିବି ରସମଞ୍ଜରୀ ପ୍ରବନ୍ଧ ଚରିତ
ପୁଷ୍ପଗୁଚ୍ଛ ପ୍ରକାରେ ସେ ମୋହିବ ଜନଚିତ୍ତ ହେ । "

" ଛବିଗୁଚ୍ଛ ଷୋଡଶ ପୁଷ୍ପ " ରେ ପୂର୍ଣ୍ଣ ଏହି

କାବ୍ୟର ପ୍ରତ୍ୟେକ 'ଗୁଚ୍ଛ' ତଥା 'ପୃଷ୍ଠ' ର ପରିଚୟ ସଂପର୍କରେ କବି ସୂଚନା ପ୍ରଦାନ କରିଛନ୍ତି —

" ରସ ସବୁଠାରେ ପୁଣି ପ୍ରଧାନ ଅଟଇ,
ମତ ମତକେ ଅଷ୍ଟ ନବରସ ହୋଇ ହେ ।
ଦୋଷ ନିର୍ଦ୍ଦୋଷ ଉପମା ଉତ୍‌ପ୍ରେକ୍ଷା ସୁଦୃଷ୍ଟି,
ସପତ ବିଧିରେ ଶ୍ଳେଷ ଅନୁପ୍ରାସ ସୃଷ୍ଟି ହେ ।
ସପ୍ତ ପ୍ରକାର ଯମକ ରୂପକ ଅଳଙ୍କାର,
ବକ୍ରଉକ୍ତି, ଛନ୍ଦ ପୁଣ ରସ ବ୍ୟଭିଚାର ହେ ।
ଛନ୍ଦ ବନ୍ଧ ନାୟିକା ନାୟକ ସୁଲକ୍ଷଣ,
ଉଦ୍ଦୀପନ, ଆଲମ୍ବନ ସଂଚରୀ ଯା ଗୁଣ ହେ ।
ବିପ୍ରଲଂଭ ସମ୍ଭୋଗ ଶୃଂଗାର ଦୁଇବିଧି
ନୀଳ କୁସୁମ ମଂଜିଷ୍ଠା ଅନୁରଗ ସିଦ୍ଧି ହେ । "

ଶେଷରେ ବିଷୟ ବସ୍ତୁର ପରିସର ମଧ୍ୟକୁ ଆସିବା ପୂର୍ବରୁ କବି ପାଠକଙ୍କୁ ଅନୁରୋଧ କରିଛନ୍ତି । "କବିଦ୍ୱ-ମୁବାସେ ଜନ-ଭୃଂଗ ଦିଅ ମନ ହେ । "

ପ୍ରଥମ ଗୁଚ୍ଛର ପ୍ରଥମ ପୃଷ୍ଠରେ ପୂର୍ବସୂରୀ ମାନଙ୍କ ଦ୍ୱାରା ନିର୍ଦ୍ଧାରିତ ନବଧାରସ ଯଥା - ଶୃଙ୍ଗାର, ବୀର, କରୁଣ, ଅଦ୍‌ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର, ଶାନ୍ତ ସହିତ ବାତ୍ସଲ୍ୟ ରସର ପ୍ରାଞ୍ଜଳ ପ୍ରଖ୍ୟାପନ ନିମନ୍ତେ କବି ରସିକ ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କ ଜୀବନୀ ଚରିତ ମଧ୍ୟରୁ କେତେକ ରସଜଡିତ ଉଦାହରଣ ଉପସ୍ଥାପନ କରିଛନ୍ତି । ଦ୍ୱିତୀୟ ପୃଷ୍ଠରେ କାବ୍ୟଦୋଷ ଓ ଗୁଣ ସଂପର୍କରେ ନୀତି ନିର୍ଦ୍ଧାରଣ କରି କବି ପୁନରୁକ୍ତି, ଅଶ୍ଳିଷ୍ଟ, ପର୍ଯ୍ୟାୟ ଅର୍ଥ ନ ଜାଣି ପ୍ରୟୋଗ, କର୍ଣ୍ଣକଟୁ, ଗୁପ୍ତଦୋଷ, ଯତିଭଂଗ, ବ୍ୟସ୍ତପଦ ପ୍ରଭୃତି ସାତ ପ୍ରକାର ଦୋଷକୁ ସ୍ୱୀକାର କରିଛନ୍ତି । ତନ୍ମଧ୍ୟରୁ କେତୋଟିର ନିର୍ଦ୍ଧାରଣ କ୍ଷେତ୍ରରେ କବି ପୂର୍ବାଚାର୍ଯ୍ୟମାନଙ୍କ ପଦାଙ୍କ ଅନୁସରଣ କରିଥିବା ସମୟରେ ଆଉ କେତେକ କବିଙ୍କର ମୌଳିକ ପାଣ୍ଡିତ୍ୟର ପରିଚୟ ଦିଏ । ଓଡିଆ କାବ୍ୟ ନିମନ୍ତେ ଯେଉଁ ଦୋଷ ବର୍ଜନୀୟ ଏବଂ ଗୁଣ ଗ୍ରହଣୀୟ କବି ସେଗୁଡ଼ିକୁ ହିଁ ଆଲୋଚନା କରିଛନ୍ତି ; ଯଥା :- ପ୍ରଥମତଃ ପୁନରୁକ୍ତି ଦୋଷ କବିର ଶବ୍ଦ - ପାଣ୍ଡିତ୍ୟ ପ୍ରକାଶନରେ ସନ୍ଦେହ ସୃଷ୍ଟି କରେ । କବିଙ୍କ ମତରେ —

" ଏକା ଚଉପଦୀକେ ନ ଥିବ ତାହିତାହି
ଏକ ବଚନ ଦୁଇ ବିଧାନେ ନ ଦେଇ ହେ । ୨ । "
( ୧ମ ଗୁଚ୍ଛ ୨ୟ ପୃଷ୍ଠ )

ଅର୍ଥାତ୍ ଗୋଟିଏ ପଦ୍ୟାଂଶରେ ଗୋଟିଏ ନିର୍ଦ୍ଦିଷ୍ଟ ଶବ୍ଦ ଏବଂ ଗୋଟିଏ ପଦର ବାରମ୍ବାର ପ୍ରୟୋଗ କାବ୍ୟର ସୌନ୍ଦର୍ଯ୍ୟ ହାନି କରିଥାଏ । ଦ୍ୱିତୀୟତଃ, ଶାସ୍ତ୍ର ବିରୋଧାତ୍ମକ କୌଣସି ଅସାଧୁ ଶବ୍ଦର ପ୍ରୟୋଗରେ କାବ୍ୟ ଦୋଷଯୁକ୍ତ ହେବା କବିଙ୍କ ପକ୍ଷେ ହାସ୍ୟାସ୍ପଦର ବିଷୟ । ତେଣୁ କବି ଏ କ୍ଷେତ୍ରରେ ସାବଧାନତା ଅବଲମ୍ବନ କରିବା ଉଚିତ୍ । ତୃତୀୟତଃ, ଅନୁଚିତାର୍ଥ ଶବ୍ଦର ପ୍ରୟୋଗ କବିଙ୍କର ଗୌରବକୁ କ୍ଷୁର୍ଣ୍ଣ କରିଥାଏ । ଏ ସଂପର୍କରେ କବିଙ୍କ ନିଜକଥା ହେଲା । —

" ପର୍ଯ୍ୟାୟ ଅର୍ଥ ନ ଜାଣି ପ୍ରୟୋଗ ନ କର
ବିଷ୍ଣୁଙ୍କୁ ବୋଲିବ ନାହିଁ ଜାନପଦ ଧର ।୭। (୧/୨)

ଚତୁର୍ଥତଃ, କାବ୍ୟ ଲଳିତ୍ୟ ରକ୍ଷା ନିମନ୍ତେ ଶ୍ରୁତିକଟୁ ଶବ୍ଦର ବର୍ଜନ ଏକାନ୍ତ ଗ୍ରହଣୀୟ । ପଞ୍ଚମରେ ତୁଳନା ବା ତର୍କଣା କ୍ଷେତ୍ରରେ କବି ବିଷୟର ଗୁରୁତ୍ୱକୁ ଦୃଷ୍ଟି ସମ୍ମୁଖରେ ରଖି ବିଚାର କରିବା ଉଚିତ । ଦୃଷ୍ଟାନ୍ତ ଦେଇ କବି କହିଛନ୍ତି —

" ମୁଁ ଚନ୍ଦ୍ର ତୁମେ କୁମୁଦ ମୁହିଁ ଜଳଧର
ତୁମ୍ଭେ ମୟୂର ବୋଲିବା ଗୁପ୍ତଦୋଷ ସାର ହେ ।
୧୦ ( ୧/୨ )

ଷଷ୍ଠତଃ, କାବ୍ୟର ପଦାବଳୀକୁ ଶ୍ରୁତିକଟୁ ଦୋଷରୁ ବଞ୍ଚାଇବା ନିମନ୍ତେ ଏବଂ ରସ ତଥା ଅର୍ଥ ପ୍ରତୀତିରେ ସରଳତା ଆନୟନ ସକାଶେ ଗଗ ଅନୁଯାୟୀ ଯତିପାତ ନିୟମର ଅନୁସରଣ କରିବା ଉଚିତ । ପରିଶେଷରେ କବି କାବ୍ୟରେ ପଦ ପ୍ରୟୋଗର କ୍ରମତା ରକ୍ଷା କରିବା ଦିଗରେ ମତପ୍ରଦାନ କରିଛନ୍ତି । ଏତଦ୍‌ବ୍ୟତୀତ କ୍ଲିଷ୍ଟ, ସନ୍ଦିଗ୍ଧ, ବର୍ଣ୍ଣନାବାହୁଲ୍ୟ, ନ୍ୟୂନ ବା ଅଧିକ ପଦତା ପ୍ରଭୃତିକୁ ସଂସ୍କୃତ ଆଳଙ୍କାରିକମାନଙ୍କ ନିୟମବଦ୍ଧ କାବ୍ୟ ଦୋଷର ପରିସର ମଧ୍ୟରୁ ମୁକ୍ତକରି ଗୁଣ ରୂପେ ଗ୍ରହଣ କରିଛନ୍ତି । ଏ ସମ୍ପର୍କରେ କବିଙ୍କ ମତ ହେଉଛି —

" ନିର୍ଦ୍ଦୋଷ ବିଧାନ ଏତେ ପ୍ରୟୋଗ ଗୀତରେ
ସଂସ୍କୃତ ପ୍ରାକୃତ ଯୋଗ ଏକା ପଦକରେ ହେ ।୧୩।

x x x x

ଦିବ୍ୟ:ଦିବ୍ୟ ଗୀତବୋଲି ଏହାକୁ ଯାଣିମ
ଦିବ୍ୟଗୀତ କଲେ ସବୁ ସଂସ୍କୃତକୁ ଆଣିମ ହେ । ୧୪ ।
ଅଦିବ୍ୟ ଗୀତରେ ନ ଛୁଇଁବ ସଂସ୍କୃତକୁ
ସ୍ୱଦେଶ ଭଷାରେ କରିଥିବ କବିଦ୍ୱକୁ ହେ । ୧୫ ।
ଅପ୍ରଚୁର ପ୍ରଚୁର ପଦରେ ଦୋଷ ନାହିଁ । "
( ୧/୨ ) ଇତ୍ୟାଦି ।

ତୃତୀୟ ପୁଷ୍ପରେ ଉପମା ଅଳଙ୍କାରର ଯଥାଯଥ ପ୍ରୟୋଗ ନିମନ୍ତେ ଏକ ଦୀର୍ଘ ତାଲିକା ପ୍ରଦାନ କରିଛନ୍ତି । ଉପବନ ମଧ୍ୟରେ ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଦେଖୁଥିବା ଅବସରରେ ନଖଠାରୁ ଶିଖ ପର୍ଯ୍ୟନ୍ତ ପ୍ରତ୍ୟେକ ଅଂଶର ତୁଳନା ମଧ୍ୟରେ କବିଙ୍କର ଏହି ତାଲିକା ରୂଦ୍ଧିମନ୍ତ ହୋଇଛି । ଚତୁର୍ଥ ପୁଷ୍ପରେ ଉତ୍‌ପ୍ରେକ୍ଷାର ପ୍ରୟୋଗ ବିଧି ସହିତ ବର୍ଣ୍ଣଶ୍ଳେଷ, ଭଷାଶ୍ଳେଷ, ଅଭଙ୍ଗ ଶ୍ଳେଷ, ସଭଙ୍ଗ ଶ୍ଳେଷ, ଭଙ୍ଗାଭଙ୍ଗ ଶ୍ଳେଷ, ପ୍ରତ୍ୟଙ୍ଗ ଶ୍ଳେଷ ପ୍ରଭୃତି ସାତପ୍ରକାର ଶ୍ଳେଷାଳଙ୍କାର ଏବଂ ଦ୍ରୁତ ଅନୁପ୍ରାସ, ଅକ୍ଷରନୁପ୍ରାସ, ଛେକାନୁପ୍ରାସ ପ୍ରଭୃତି ବହୁବିଧ ଅନୁପ୍ରାସ ସମ୍ପର୍କରେ ଅବଗତ କରାଇଛନ୍ତି ।

ଦ୍ୱିତୀୟ ଗୁଚ୍ଛର ପ୍ରଥମ ପୁଷ୍ପରେ ଆଦ୍ୟ, ପ୍ରାନ୍ତ, ମଧ୍ୟ, ଆଦ୍ୟ ପ୍ରାନ୍ତ, ତ୍ରିଭଙ୍ଗୀ, ମାଳଯମକ ଏବଂ ମହାଯମକ ପ୍ରଭୃତି ୭ ପ୍ରକାର ଯମକର ଉଦାହରଣ ପ୍ରଦାନ କରି କବି ସ୍ୱକୀୟ ଉତ୍କୃଷ୍ଟ ବର୍ଣ୍ଣନାଶୈଳୀ ଦିଗରେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ଦ୍ୱିତୀୟ ପୁଷ୍ପରେ ଦେଖିବାକୁ ମିଳେ ବିଭିନ୍ନ ରୂପକ ସହିତ ଶୋଭ, କାନ୍ତ, ଦୀପ୍ତି, ମାଧୁର୍ଯ୍ୟାଦି ଅଷ୍ଟବିଂଶତି ଅଳଙ୍କାର ଲକ୍ଷଣ । ତୃତୀୟ ପୁଷ୍ପର ବିଷୟବସ୍ତୁ ହେଉଛି - ଗୋପିକାମାନଙ୍କ କଥୋପକଥନ ଏବଂ ହାସ ପରିହାସ ଛଳରେ ବକ୍ରୋକ୍ତି, ଛନ୍ଦଶ୍ଳେଷ ଏବଂ ରସବ୍ୟଭିଚର । ଚତୁର୍ଥ ପୁଷ୍ପକୁ ବିଭିନ୍ନ ଛନ୍ଦ ତଥା ବନ୍ଧର ପ୍ରୟୋଗରେ କବି 'ନାନା ବିଧିବିଧାନ ନିବାସ' ସ୍ଥଳୀ ରୂପେ ଗ୍ରହଣ କରି ନିଜସ୍ୱ ବିଦଗ୍‌ଧତାର ପରାକାଷ୍ଠା ଦର୍ଶାଇବା ସଙ୍ଗେ ସଙ୍ଗେ 'ରସ ମଞ୍ଜରୀ' ଅଳଙ୍କାର ଗ୍ରନ୍ଥର ଗୁରୁତ୍ୱ ଏବଂ ଗୌରବକୁ ବହୁଗୁଣିତ କରିପାରିଛନ୍ତି । ତନ୍ମଧ୍ୟରେ ସନ୍ନିହିତ ଗୋମୂତ୍ର ଛନ୍ଦ, ଶାର୍ଦ୍ଦୂଳ ବିକ୍ରିଡ଼ତ, ଶୃଙ୍ଖଳା ଛନ୍ଦ, ଅନ୍ତର୍ଲିପିକା, ବହିର୍ଲିପିକା ତଥା ପଦ୍ମବନ୍ଧ ଗୀତ, ସର୍ପବନ୍ଧ ଗୀତ, ଛତ୍ରବନ୍ଧ ଗୀତ ପ୍ରଭୃତି ପାଠକ ମନରେ ପଠନଗତ ଆଗ୍ରହ ଏବଂ ଅନୁସନ୍ଧିତ୍ସାକୁ ଅଧିକ ବଳବତ୍ତର କରେ । କବି ପୁଷ୍ପର ପ୍ରଥମ ଭଗରେ ଏ ସଂପର୍କରେ ସ୍ପଷ୍ଟକରି କହିଛନ୍ତି —

" ଦେଖ ମୂର୍ଖ ହେଲେ ହେବେ ଆନନ୍ଦ
କରୁ ଗତି ରଚନା ଛାନ୍ଦବୃନ୍ଦ । " ( ୨ ) (୨/୪)

ଏତଦ୍‌ବ୍ୟତୀତ ତୃତୀୟ ଗୁଚ୍ଛରେ ପଦ୍ମିନୀ, ଚିତ୍ରିଣୀ, ହସ୍ତିନୀ, ଶଂଖିନୀ ପ୍ରଭୃତି ଚରି ଜାତୀୟା ନାରୀ ଗନ୍ଧର୍ବସତ୍ୱା, ଯକ୍ଷସତ୍ୱା, ଦେବସତ୍ୱା, ପ୍ରେତସତ୍ୱା, ମଧ୍ୟା ପ୍ରଗଳ୍‌ଭ, ଧୀର, ଅଧୀର, ଧୀରଧୀର,

ତଥା ସ୍ୱକୀୟା, ପରକୀୟା, ସାଧାରଣୀ ଏବଂ ସ୍ୱାଧୀନଭର୍ତ୍ତା, ବାସକ ସଜ୍ଜା, ଖଣ୍ଡିତା ପ୍ରଭୃତି ଅଷ୍ଟ-ନାୟିକା ଲକ୍ଷଣ ସହିତ ବିଭିନ୍ନ ନାୟକ ଲକ୍ଷଣ ମଧ୍ୟ ପ୍ରଦାନ କରିଛନ୍ତି । ପରବର୍ତ୍ତୀ ଚତୁର୍ଥ ଗୁଚ୍ଛର ବିଭିନ୍ନ ପୁଷ୍ପ ପର୍ଯ୍ୟାୟରେ କବି ଆଲମ୍ବନ, ଉଦ୍ଦୀପନ, ବ୍ୟଭି-ଚାରୀଭାବ, ବିପ୍ରଲମ୍ଭ ଏବଂ ସମ୍ଭୋଗ ଦ୍ୱିବିଧ ଶୃଙ୍ଗାର ତଥା ବିଭିନ୍ନ ଅନୁରାଗ ସମ୍ପର୍କରେ ଆଲୋଚନା କରି-ଛନ୍ତି । ଅତଏବ 'ରସ ମଞ୍ଜରୀ' ଏକ ଉତ୍କୃଷ୍ଟ ଅଳଙ୍କାର ଗ୍ରନ୍ଥ ରୂପେ ସ୍ୱୀକାର କରିବାରେ କୌଣସି ଦ୍ୱିରୁକ୍ତି ନାହିଁ ।

ବହୁବିଧ ରାଗର ସଂଯୋଜନା କରି କବି ସଂପୂର୍ଣ୍ଣ କାବ୍ୟର ଶୈଳୀକୁ ଶୋଭାଶ୍ରୀମଣ୍ଡିତ କରିପାରିଛନ୍ତି । ପ୍ରତ୍ୟେକ ପୁଷ୍ପରେ ସ୍ୱତନ୍ତ୍ର ବିଭିନ୍ନ ରାଗ ଯଥା - ମାଳବ, ନଳିନୀ ଗୌଡ଼ା, ବସନ୍ତ ( କଳସାବାଣୀ ), ରାମକେରୀ, ବଙ୍ଗଳାଶ୍ରୀ, ବରାଡ଼ି, ବସନ୍ତ ବରାଡ଼ି, ଚକ୍ର-କେଳିବାଣୀ, କୌଶିକ, ରେଖୀ ଇତ୍ୟାଦି ପ୍ରୟୋଗ କରି କବି କାବ୍ୟ ସୃଷ୍ଟିରେ ସ୍ୱକୀୟ ବିଦ୍‌ବତ୍ତାର ପରିଚୟ ପ୍ରଦାନ କରିଛନ୍ତି ।

ପରିଶେଷରେ ଭଣିତାରେ ଉପେନ୍ଦ୍ର ଭଞ୍ଜ ନିଜକୁ କେଉଁଠି କେବଳ 'ଉପଇନ୍ଦ୍ର' କହିଥିବା ସମୟରେ ଅନ୍ୟ କେଉଁଠି 'ଉପଇନ୍ଦ୍ର ବୀରବର' କିମ୍ବା 'ଉପଇନ୍ଦ୍ର ଭଞ୍ଜ ବୀରବର' ଏବଂ 'ଉପଇନ୍ଦ୍ର ଭଞ୍ଜ' ଶବ୍ଦର ପ୍ରୟୋଗ କରିଛନ୍ତି । କିନ୍ତୁ ଏହି ପର୍ଯ୍ୟାୟରେ ତାରକ-ମନ୍ତ୍ର ପ୍ରସାଦରୁ କବିତ୍ୱ ଲାଭ କରିଥିବା କବି କେଉଁଠି 'ଶ୍ରୀରାମ- ସାରସ' କୁ ନିଜ 'ମାନସ' ରେ ଅନବରତ ବିହାର କରିବା ନିମନ୍ତେ ଅନୁରୋଧ କରିଛନ୍ତି । ଅନ୍ୟ କେଉଁଠି 'ସୁଭରତ ଅପ୍ରଭ ଉବରେ' ସଦାସର୍ବଦା ନିଜକୁ ବାନ୍ଧିରଖି ଏବଂ ଅନ୍ୟତ୍ର ନିଜକୁ 'ରାମଭକ୍ତି ଲୋଲୁପ' ହୋଇଥିବା ଜଣାଇ ନିଜସ୍ୱ ଐକାନ୍ତିକ ଭକ୍ତିମତ୍ତାର ପରିଚୟ ଦେଇଛନ୍ତି । ଏପରିକି ସେହି ସର୍ବମଙ୍ଗଳମୟ ଦାତାର ଆଶ୍ରୟରେ ନିଜର କାୟ-ମନ-ବାକ୍ୟକୁ ସମର୍ପଣ କରି କବି କହିଛନ୍ତି —

" ମାରୀଚ ମାରି ମୁନି ନାରୀ ତାରି ଯେ
ଭୀମ କୋଦଣ୍ଡକୁ ଖଣ୍ଡିତ
ଭୃଗୁପତିର ଗର୍ବ ଖର୍ବ କରି ପଥରେ
କହେ ଉପଇନ୍ଦ୍ର ଭଞ୍ଜ ସେହି ଦାତା
ମୋର ସର୍ବ ମନୋରଥରେ । "

ଉପେନ୍ଦ୍ରଙ୍କ 'ରସ ମଞ୍ଜରୀ' ରଚନାର ବହୁ ପୂର୍ବରୁ ଭାନୁଦତ୍ତ ଏହି ନାମରେ ଏକ ଗ୍ରନ୍ଥ ସଂସ୍କୃତରେ ରଚନା କରିଥିଲେ । କିନ୍ତୁ ତାହାର ବିଶେଷ ପ୍ରଭାବ ଉପେନ୍ଦ୍ରକୃତ କାବ୍ୟ ଗ୍ରନ୍ଥର ବିଷୟ ବିନ୍ୟାସ ଉପରେ ପଡ଼ି ନ ଥିବା ମଧ୍ୟ ଜଣାଯାଏ । କିନ୍ତୁ 'ନାମ କରଣ' କ୍ଷେତ୍ରରେ କବି ଉପେନ୍ଦ୍ର ଭଞ୍ଜ ପ୍ରଭାବିତ ହୋଇଥିବା ପରି ମନେହୁଏ ।

ପରିଶେଷରେ ଏତିକି କୁହାଯାଇପାରେ ଯେ, ଅପ୍ରକାଶିତ କାବ୍ୟ 'ରସ ମଞ୍ଜରୀ'ର ସୃଷ୍ଟି ସମୟ ସମ୍ପର୍କରେ କୌଣସି ସଠିକ ସୂଚନା ମିଳୁ ନ ଥିଲେ ହେଁ ଏହା ଉପେନ୍ଦ୍ର ଭଞ୍ଜଙ୍କର ଆଦ୍ୟ ଅଳଙ୍କାର ଗ୍ରନ୍ଥ ବା ରସ ଶାସ୍ତ୍ର ଗ୍ରନ୍ଥ ରୂପେ ସ୍ୱୀକୃତ ଏବଂ 'ରସ ପଞ୍ଚକ'ର ପୂର୍ବବର୍ତ୍ତୀ ରଚନା । ପ୍ରମାଣ ସ୍ୱରୂପ 'ରସ ପଞ୍ଚକ' ରେ ସନ୍ନିହିତ କବିଙ୍କର ସ୍ୱୀକାରୋକ୍ତି କୁ ଗ୍ରହଣ କରାଯାଇ-ପାରେ —

" କହିଲି ଖ୍ୟାତେ ଅଳଙ୍କାର ଗୀତେ
କରି ଆନ ଗ୍ରନ୍ଥ ରସ ସହିତେ
କାବ୍ୟ ପ୍ରକାଶ, ସ୍ମର ଶାସ୍ତ୍ର ରସ
କବି କଳ୍ପଲତାର ଯେ ବିଶେଷ । "

ଏଥିରୁ 'କାବ୍ୟ ପ୍ରକାଶ', 'କାମ ଶାସ୍ତ୍ର' ଏବଂ 'କବି କଳ୍ପଲତା' ର ବିଷୟ ଅବଲମ୍ବନରେ 'ରସ-

ମଞ୍ଜରୀ ' କାବ୍ୟର ସୃଷ୍ଟି ହୋଇଥିବା ଅନୁମାନ କରାଯାଏ । କିନ୍ତୁ ' ରସ ମଞ୍ଜରୀ ' ' ରସ ପଞ୍ଚକ ' ଠାରୁ ମଧ୍ୟ ଶ୍ରେଷ୍ଠ ପ୍ରତିପାଦିତ ହେଉଛି । ଏହାର ଭାଷା ଯେପରି ଅତ୍ୟନ୍ତ ସରଳ ଏବଂ ବୋଧଗମ୍ୟ ହୋଇଛି, ସେହିପରି ଭାବ ମଧ୍ୟ ପ୍ରାଞ୍ଜଳ ଓ ଉପଭୋଗ୍ୟ ହୋଇପାରିଛି । ଅତି ସଂକ୍ଷିପ୍ତ ପରିବେଶ ମଧ୍ୟରେ କବି ଭାବକୁ ଯଥା - ସମ୍ଭବ ସ୍ପଷ୍ଟ କରିବା ନିମନ୍ତେ ଯଥେଷ୍ଟ ସୂଚନା ଦେଇଛନ୍ତି । ତେଣୁ ଏହାର ଶବ୍ଦାବଳୀ ପାଠକ ମନରେ ବିଶେଷ ଶବ୍ଦ-କସରତ ଜନିତ ଆତଙ୍କ ସୃଷ୍ଟି କରେ ନାହିଁ । ବରଂ ପାଠକଙ୍କୁ ଏକ ଭିନ୍ନ ଅବବୋଧ ତଥା କବିଙ୍କର ସାବଲୀଳ-ଶାବ୍ଦିକତାର ଆହ୍ଲାଦ ଯୋଗାଏ । ଅତଏବ ' ରସ-ମଞ୍ଜରୀ ' ରସ ଶାସ୍ତ୍ର ବା ଅଳଙ୍କାର ଗ୍ରନ୍ଥ ହେଲେ ହେଁ ରୀତିଯୁଗୀୟ ଅନ୍ୟାନ୍ୟ କାବ୍ୟ ଠାରୁ ଏହାର ଗୁରୁତ୍ୱ କିଛି କମ୍ ନୁହେଁ ; ବରଂ ପ୍ରକାଶ ଲାଭ କରିବା ପରେ ଏହା ଯେ ଅଧିକ ଗୌରବର ଅଧିକାରୀ ହେବ, ସେଥିରେ କୌଣସି ସନ୍ଦେହ ନାହିଁ ।





# " ଭଞ୍ଜୀୟ କାବ୍ୟାନୁଭବରେ ନାରୀ " ।

★ ହରପ୍ରିୟା ପଣ୍ଡା
ଅଧ୍ୟାପିକା, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
କୁଚିଣ୍ଡା ମହାବିଦ୍ୟାଳୟ ।
କୁଚିଣ୍ଡା, ସମ୍ବଲପୁର ।



ଆର୍ଯ୍ୟଭୂମି ଭାରତର ସଂସ୍କୃତି, ପରମ୍ପରା ଖୁବ୍ ପ୍ରାଚୀନ; ଆହୁରି ପ୍ରାଚୀନ ମଧ୍ୟ ଏ ଦେଶର ଧର୍ମୀୟ ଚେତନା । ଯୁଗେ ଯୁଗେ ନାରୀର ବହୁବିଧ ରୂପର ବର୍ଣ୍ଣନା ଏ ଦେଶର ସାହିତ୍ୟ, କଳା, ଭାସ୍କର୍ଯ୍ୟରେ ଚିର ବନ୍ଦିତ ହୋଇ ଆସିଛି । ମନୁ ସଂହିତାରେ ଆଗ୍ରର୍ଯ୍ୟ ମନୁ ଯେଭଳି ନାରୀର ପୂଜା-ଉପାସନାରେ ଧରା ଦେବତାଙ୍କର ଲୀଳାସ୍ଥଳୀରେ ପରିଣତ ହେବାର ସୂଚନା ଦେଇଛନ୍ତି, ଠିକ୍ ସେଇଭଳି ମହାନାଟକରେ ମଧ୍ୟ ନାରୀର ବହୁବିଧ ସ୍ୱରୂପର ବର୍ଣ୍ଣନା କରାଯାଇଛି:—

" କାର୍ଯ୍ୟେଷୁ ମନ୍ତ୍ରୀ, କରେ ଦାସୀ
ଧର୍ମେଷୁ ପତ୍ନୀ, କ୍ଷମୟା ଧରିତ୍ରୀ
ସ୍ନେହେଷୁ ମାତା, ଶୟନେଷୁ ବେଶ୍ୟା
ରଙ୍ଗେ ସଖୀ, ଲକ୍ଷଣସା ପ୍ରିୟାମେ । "

( ୫ମ ଅଙ୍କ-୭ମ ଦୃ )

ଅର୍ଥାତ୍ ନାରୀ ବହୁ ଗୁଣରେ ଅଳଂକୃତା ହେଲେ ମଧ୍ୟ ସେ ଆଦ୍ୟାଶକ୍ତି ରୂପେ ପୂଜ୍ୟା ଏବଂ ବନ୍ଦନୀୟା : କାରଣ- She is Eternal, The Universe is her from. She pervades all this ନାରୀର ଅର୍ଦ୍ଧେକ ମାନବୀ ଆଉ ଅର୍ଦ୍ଧେକ କବିର କଳ୍ପନା; ଭବମୟୀ । ପୁରୁଷ ସହିତ ମିଳିତ ହୋଇ ସେ ମହାଭାବରୂପା ଶକ୍ତିରେ ହୁଏ ରୂପାନ୍ତରିତ । କୁହାଯାଏ:— Man and woman are insepara-ble like heat from fire, whiteness from milk Swetness from sugar, kiminosity from light and weight from natural bodies. "

ବାସ୍ତବ ଦୃଷ୍ଟି କୋଣରୁ ବିଚାରକଲେ ଭାରତୀୟ କାବ୍ୟକାନନରେ ସୀତା-ସାବିତ୍ରୀଙ୍କ ଭଳି ନାରୀ-ମାନଙ୍କର ସୌରଭ ଯୁକ୍ତ ଚରିତ୍ର ପୁଷ୍ପ ଆତ୍ମ ପ୍ରକାଶ କରି ଜନମନକୁ ପୁଲକରେ ପୁଲକିତ ଆଉ ଆଦରଣର ଆମୋଦରେ ଆମୋଦିତ କରି ଆସିଛି ଯେଉଁ ନାରୀ ସକଳ ବସ୍ତୁର ମୂଳାଧାର, ପୁରୁଷର ନିଃସଙ୍ଗ ଜୀବନର ପରମ ବାନ୍ଧବୀ, ପ୍ରେମ ମନ୍ଦାକିନୀର ଧାରା, କର୍ମକ୍ଳାନ୍ତ ଜୀବନର ସ୍ନେହ - ପ୍ରେମ - କରୁଣାର ଉତ୍ସରୂପେ ଭାରତୀୟ ବିଚାରଧାରାରେ ସ୍ୱୀକୃତି ଲାଭ କରିଥିଲା; ସେଇ ନାରୀ ମୋଗଲ ରାଜତ୍ୱରେ ଏକ ବିବର୍ତ୍ତିତ ରୂପନେଇ ଦେଇଛି ବିଳାସ - ବ୍ୟସନ-ସୁରା-ସାକୀ ମଧ୍ୟରେ । ସେ ଆଉ ପୂଜ୍ୟା ନ ହୋଇ ହୋଇଛି ଭୋଗ୍ୟା ନାରୀର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ବିଶ୍ୱ କବିକୁଳ ହୋଇ ଉଠିଛନ୍ତି ଶତମୁଖ, ବୈଷ୍ଣବୀୟ ବର୍ଣ୍ଣନା ବହୁଳ ଚିତ୍ରର ଏକ ଅଭିନବ ରୂପ ପ୍ରକାଶିତ ହୁଏ କବୀନ୍ଦ୍ର ଉପେନ୍ଦ୍ରଙ୍କ ଆବିର୍ଭାବ ପରେ । ନାରୀ ଚରିତ୍ରର ବହୁ ଅନୁଭବ ବିଭବକୁ କବି ସମ୍ରାଟ ଉପେନ୍ଦ୍ର ତାଙ୍କ କାବ୍ୟ କବିତାରେ ସ୍ଥାନ ଦେବା ସଙ୍ଗେ ସଙ୍ଗେ ନାରୀର ବିବିଧ ରୂପ ମଧ୍ୟରେ ଜନନୀ-ଭଗିନୀ-ଜାୟା କନ୍ୟା ସହଚରୀ ମାଳିନୀ, ଅନୁଚରୀ, ସଂନ୍ୟାସିନୀ, ସନ୍ୟାସିନୀ ପ୍ରଭୃତି ଭୂମିକାକୁ ସୁନ୍ଦର ସାବଲୀଳ ଭାବରେ ଉପସ୍ଥାପିତ କରିଛନ୍ତି । ସାଧାରଣତଃ ଭଞ୍ଜୀୟ ନାୟିକା ଚିର ସବୁଜ, ଯୌବନୋଦ୍ଦୀପିତ ଏବଂ ଉଚ୍ଛଳ ସମ୍ପୁଟା,

କବିଦୃଷ୍ଟିରେ ସେମାନେ ହୋଇଛନ୍ତି ଷୋଡଶୀ, ରୂପସୀ ଗଜଗାମିନୀ, ମଧୁର ଭଷିଣୀ, ଅର୍ଥାତ—" ତରୁଲତା-ଶ୍ରେଣୀ/ତରୁଣ ତରୁଣୀ-ସମସ୍ତେ ସୁମନ ସୁବେଶ"

ସୌନ୍ଦର୍ଯ୍ୟ ଚିରନ୍ତନ ଆନନ୍ଦ ଦାୟକ, କବି-ଭବୁକଠାରୁ ସାଧାରଣ ମଣିଷ ପର୍ଯ୍ୟନ୍ତ ସମସ୍ତେ ସୌନ୍ଦର୍ଯ୍ୟର ଏକ ନିଷ୍ଠ ଉପାସକ, କୀଟସ୍‌ଙ୍କ ଭଷାରେ ସୌନ୍ଦର୍ଯ୍ୟ—

" A thing of beauty is joy for ever "; ପୁଣି ରାଧାନାଥଙ୍କ ଭଷାରେ, —

" ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ । "

ଜଗତ୍ ମହାମହୋତ୍ସବମୟ, ସୌନ୍ଦର୍ଯ୍ୟର ସେଇ ଚିରନ୍ତନ ଅନିର୍ବଚନୀୟ ଭବସତ୍ତା ଭିତରେ ହଳାହଳମୟ ଯନ୍ତ୍ରଣାଥିଲେବି ମିଳନର ମାହେନ୍ଦ୍ର ବେଳାରେ ସେ ସବୁ ଆନନ୍ଦ . ମୁଖର ହୋଇଉଠେ । ସେଇ ମିଳନ ହିଁ ନାୟକ-ନାୟିକାଙ୍କର ସମସ୍ତ ଦୁଃଖକୁ ପରିହାର କରି ପ୍ରୀତି ପାରାବାରରେ ସେମାନଙ୍କୁ ଅବଗାହନ କରାଏ । ସେମାନଙ୍କ କବି ଉପେନ୍ଦ୍ର ଭଞ୍ଜ ପ୍ରେମମୟୀ ନାରୀର ଚିତ୍ର ଦେବା ପ୍ରସଙ୍ଗରେ ଚିରନ୍ତନ ପ୍ରେମର ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି " ରସିକ ହାରାବଳୀ " ରେ —

" ପ୍ରୀତି ହୋଇ ଯେବେ ଏଡେ ମଧୁର
କ୍ଷୁଧା ତୃଷା ପୁଣି ହୁଏ ବିଧୁର,
ପୁଣି ଦଇବେ ହୋଇଲେ ଦମ୍ପତି
ପଦ ତଳେ ମିଳେ ଇନ୍ଦ୍ର ସମ୍ପତି ଇତ୍ୟାଦି

ସୁତରାଂ କବି ଚକ୍ଷୁରେ "Woman is a ray of God, not a mere mistress. The creators self not a creature. "

ଆଜି ବିଂଶ ଶତାବ୍ଦୀରେ ବି ଦେଖାଯାଏ ନାରୀ ପ୍ରତି ହେଉଥିବା ଅକଥନୀୟ ଅତ୍ୟାଚାର ଲୋମହର୍ଷଣ ବିଭୀଷିକା ପୁରୁଷ ଆଜି ଭୁଲି ଯାଉଛି ନାରୀ ପ୍ରତି ଥିବା ତା'ର କର୍ତ୍ତବ୍ୟକୁ । ଯେଉଁ ଦେଶରେ ନାରୀ ପ୍ରଗତି ଯେତେ ଉନ୍ନତ ସେ ଦେଶ, ସେ ଜାତି, ତାର ସାହିତ୍ୟ-ସଂସ୍କୃତି-ପରମ୍ପରା ସେତେ ସମୁନ୍ନତ । ଦୀର୍ଘ ୪ଶହ ବର୍ଷ ପୂର୍ବେ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ ଏଥି ପ୍ରତି ତାଙ୍କର ସୁତୀକ୍ଷ୍ଣ କଟାକ୍ଷପାତ କରିବାକୁ ଭୁଲି ନାହାଁନ୍ତି । ତାଙ୍କ ଲେଖନୀ ତେଣୁ ନାରୀର ବହୁମୁଖୀ ପ୍ରତିଭ ବର୍ଣ୍ଣନାରେ ଶତମୁଖ ହୋଇ ପ୍ରକାଶ କରିଛି, ନାରୀ—

"ଏ ସଂସାରରେ ସାର" (ଲା: ବ ୩୪ଛା) ପୁଣି
ହୀରନୀଳା ମାଣିକ୍ୟ ମୁକୁତା ବିଦ୍ରୁମରେ/ମୂଲ୍ୟ
ଅଛି,/ମୂଲ୍ୟ ନାହିଁ ସ୍ତିରୀ-ରତନରେ—
ତେଃତେ ତୁ ପଟାନ୍ତରରେ,
ମୋର ଅଶେଷ ତପପୁଣ୍ୟ
ନାରୀ ସ୍ୱରୂପ, ହୋଇଛୁ ସମାଦର ରେ । "

ଭଞ୍ଜୀୟ ନାରୀ ପରମ୍ପରାକୁ ମାନ୍ୟତା ଦେଇ ଆସିଛି । " ବୈଦେହୀଶ ବିଳାସ " ରେ ରାମଚନ୍ଦ୍ରଙ୍କର — " ବିଭୁତୁ; ମୁଁ ଦାସ, ଏହି ରୂପେ ଏକା ହୋଇଥିବୁ ଅନୁରାଗୀ " କୁ ସେ (ସୀତା) ସାଦରେ ଗ୍ରହଣ ନକରି ତାଂର ପ୍ରତିବାଦ କରି କହିଛି—

ବୋଇଲେ ସୁମତି ଏସର୍ବ ସମ୍ମତି
ପୁଂସ ପ୍ରଭୁ ନାରୀ ଦାସୀ

କାମ - ଶାସ୍ତ୍ରାନୁଯାୟୀ ନାୟିକା ୪ପ୍ରକାର ( ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ, ହସ୍ତିନୀ ) । ଏକଥା କବି ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସର ୪୦ଛାନ୍ଦରେ

ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଏବଂ ତାଙ୍କର ପ୍ରତ୍ୟେକ ନାୟିକା ପଦ୍ମିନୀ ଓ ଚିତ୍ରିଣୀ ଜାତୀୟା ଅଟନ୍ତି । ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ନବରସ ମଧ୍ୟରୁ ଶୃଙ୍ଗାର ରସକୁ କବି ଉପେନ୍ଦ୍ର ଭଞ୍ଜ ମାନ୍ୟତା ପ୍ରଦାନ କରି ଥିଲେହେଁ ଏକ ନିର୍ଦ୍ଦିଷ୍ଟ ସୀମା-ସରହଦ ମଧ୍ୟରେ ରହି ନିଜ କାବ୍ୟ - କବିତା ସମୂହରେ ସେ ସବୁକୁ ଚର୍ଚ୍ଚା କରିଛନ୍ତି । କାରଣ ସେ ବୈଷ୍ଣବୀୟ ପରକୀୟା ପ୍ରୀତିର ବହୁ ଉର୍ଦ୍ଧ୍ୱରେ ବୈଧୀ ପ୍ରୀତିକୁ ସ୍ୱାଗତ କରିଛନ୍ତି । କାନ୍ତା ସହିତ ବୈଧୀପ୍ରୀତି ଧର୍ମ ଶାସ୍ତ୍ରାନୁମୋଦିତ ହୋଇଥିବା ହେତୁ ତାଙ୍କର ସମସ୍ତ ନାୟିକା ବିବାହକୁ ସାଦରେ ସ୍ୱାଗତ ଜଣାଇ ବର-ବରଣୀ କରିଛନ୍ତି । ତେଣୁ ସେଇଥିପାଇ କୁତ୍ରାପିସ୍ଥଳେ ଉଚ୍ଛୃଙ୍ଖଳ ଅବୈଧ ପ୍ରୀତି ପାଠକର ଦୃଷ୍ଟି ଗୋଚର ହୁଏନାହିଁ, ବରଂ " ପରଦ୍ରବ୍ୟ ପରସ୍ତ୍ରୀ ହରଣକୁ/ ତହୁଁ ଶୁଭ କରିଲେଖୁଁ ମରଣକୁ" ଭଳି ସାବଧାନୀ ବାଣୀ ଶୁଣିବାକୁ ପାଏ ।

ରୀତିଯୁଗୀୟ ନାୟିକା ମୁଖ୍ୟତଃ ଭଞ୍ଜୀୟ ନାୟିକାଗଣ ସମ୍ଭ୍ରାନ୍ତ ବଂଶୀୟ ଏବଂ ପଦ୍ମିନୀ, ଚିତ୍ରିଣୀ ଜାତୀୟା ନାରୀ । ସାଂପ୍ରତିକ ସମ୍ଭ୍ରାନ୍ତ ବଂଶୀୟ ଉଚ୍ଛୃଙ୍ଖଳତା, ନାରୀ ସ୍ୱାଧୀନତା ନାଁ ରେ ଯେଉଁ ସ୍ୱେଚ୍ଛା-ଋରିତାକୁ ଆଜି ଦେଖୁ, ଉପେନ୍ଦ୍ର ଭଞ୍ଜ ସେ ସବୁକୁ ସେତେବେଳେ ମଧ୍ୟ ଗ୍ରହଣ ନକରି ନାରୀର ସତୀତ୍ୱ ରକ୍ଷା ପ୍ରତି ଧ୍ୟାନ ଦେଇଥିଲେ । ପତ୍ର ଆଦାନ ପ୍ରଦାନ ଦେବ ଦର୍ଶନ ଉପବନ ଭ୍ରମଣ ଭିତରେ ତଥା ସାମାଜିକ ନୀତି-ନିୟମ, ସମ୍ମାନ, ଶିଷ୍ଟାଚରର ସୀମା ମଧ୍ୟରେ ରହି ଚଳିବା ପାଇଁ ବରଂ ନାୟିକା, ପ୍ରେମିକା ମାନଙ୍କୁ କବି ନିର୍ଦ୍ଦେଶ ଦେଇଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏବଂ ଲାବଣ୍ୟବତୀ ଏହାର ଜ୍ୱଳନ୍ତ ନିଦର୍ଶନ ।

ରୀତିକାବ୍ୟର ନାୟିକା ଭଳି ନାୟକ ତା'ର ମନୋମତ ଦିବ୍ୟନାରୀ ଲାଭ କରିବା ପାଇଁ ନିକୃଷ୍ଟ ତପଶ୍ଚରଣ କରିବାକୁ ପଶ୍ଚାତ୍ ପଦ ହୋଇ ନାହିଁ । ସେଇଥିପାଇଁ ଲାବଣ୍ୟବତୀର କାବ୍ୟ ନାୟକ ସୁଚକ ପ୍ରଭଜର ଅଗନା ଅଗନି ବନସ୍ତ ମଧ୍ୟରେ ଖଗ-ବର୍ଷା, ଶୀତ—ବାତକୁ ସହ୍ୟ କରି ଭୂମିଶଯ୍ୟା, ବସ୍ତ୍ରହୀନ ଭିତରେ ପୁଣି ପଞ୍ଚାଗ୍ନି ମଧ୍ୟରେ ପ୍ରତିଦିନ ମୃତ୍ତିକା ଶଙ୍କର ପୂଜା କରିଛି । ଦିବ୍ୟନାରୀ ଲାଭ କରିବାକୁ ତ ପୁଣି ପ୍ରେମ ସୁଧାନିଧିର ନାୟକ କୋଶଳ ରାଜକୁମାର ଉତ୍ତମ ନାରୀ ଲାଭ ପାଇଁ କରିଛି କାର୍ତ୍ତିକରେ ଦୀପଦାନ ମକରେ ପ୍ରୟାଗେ ସ୍ନାନ ।" ଅତଏବ ଏଥିରୁ ପ୍ରମାଣିତ ହୁଏ ଯେ ନାରୀ ବିନା ପୁରୁଷ ସର୍ବଦା ନିଜକୁ ଅସହାୟ ମଣେ । ତେଣୁ ନାରୀହୀନ ବିଷାଦମୟ ଜୀବନଠାରୁ ମୃତ୍ୟୁ ବରଂ ଶ୍ରେୟସ୍କର ମଣି ମୃତ୍ୟୁର ଶୀତଳ ପରଶକୁ ଆମନ୍ତ୍ରଣ କରିଛି । ନାରୀର ରସମୟ, ଚିତ୍ତବିନୋଦିନୀ ବାଣୀ ପୁରୁଷର ଚିତ୍ତକୁ ଆମୋଦିତ କରେ । ରୂପଜ ପ୍ରେମ, ଦୈହିକ ଆକର୍ଷଣ ଭଞ୍ଜୀୟ କାବ୍ୟ-କଳାକୁ ଦେଇଛି ପ୍ରାଣପ୍ରାଚୁର୍ଯ୍ୟ । ପ୍ରକୃତି-ପୁରୁଷର ଅଭିନ୍ନତ୍ୱକୁ ପ୍ରତିପାଦିତ କରିବାକୁ ଯାଇ କବି ସମ୍ରାଟ ପ୍ରମାଣିତ କରିଛନ୍ତି ଜୀବନର ବାସ୍ତବ କ୍ଷେତ୍ରରେ ନାରୀ ପୁରୁଷ ଦୁହେଁ ଏକ ଓ ଅଭିନ୍ନ । ଶାରୀରିକ ଭିନ୍ନତା ସତ୍ତ୍ୱେ ସେମାନଙ୍କର ମାନସିକ ଅଖଣ୍ଡତା ବିଦ୍ୟମାନ । ରୀତିଯୁଗୀୟ କବି ସେହି ଚିରନ୍ତନ ସତ୍ୟର ମହିମା ଗାନ କରିଛି ତା'ର ସୃଷ୍ଟି ସମ୍ଭାର ଭିତରେ । ଲାବଣ୍ୟବତୀରେ କବି ଉପେନ୍ଦ୍ର ସେଇ ସତ୍ୟକୁ ପ୍ରକାଶ-କରିଛନ୍ତି—

" ପ୍ରାଣବନ୍ଧୁ ! ନାରୀ ପୁରୁଷ ଦୁଇରେ
ଯେନି ଏକା ଜୀବନ କେବଳ ତନୁ ଭିନ୍ନ
ଯୋଗ ଏକଧ ହୋଇବେ, ପ୍ରାଣବନ୍ଧୁ । "

" ବିପଦ ସମୟର ବନ୍ଧୁ ପ୍ରକୃତ ବନ୍ଧୁ "— ଭଞ୍ଜୀୟ ନାୟିକା ଗଣ ଯେତେବେଳେ ପତ୍ର ବିନିମୟ ମଧ୍ୟରେ ନିଜ ଭବାବେଗକୁ ନାୟକ ନିକଟକୁ ପ୍ରେରଣ କରିବାକୁ ଋହିଁ ବିପଦର ସମ୍ମୁଖୀନ ହୋଇଛି । ସେତେବେଳେ ବିଶ୍ୱାସୀ ସହଚରୀ ମାନଙ୍କର ଆଶ୍ରୟ

ନେଇଛନ୍ତି । ସେ ସହଚରୀ ଗଣ ପୁଣି ହୋଇଛନ୍ତି ଦୟାବତୀ, ସଂପଦ-ବିପଦର ସଂଗିନୀ, ସହନଶୀଳା, କଷ୍ଟସହିଷ୍ଣୁ । ବାସ୍ତବିକ୍ ଏକ ପତିବ୍ରତରେ ଅଚଳା-ଅବଳା କାବ୍ୟ ନାୟିକାଙ୍କୁ ଜଳକେଳି, ଉପବନଭ୍ରମଣ ଦେବଦର୍ଶନ, ଆଳାପ, ଛଳୋକ୍ତି ସର୍ବୋପରି ରୀତି ନୀତି ଭିତରେ ସାହଚରୀ ମାନଙ୍କର ସହଚର୍ଯ୍ୟ ଏକାନ୍ତ ଅପରି-ହାର୍ଯ୍ୟ ମନେହୁଏ । ଭଞ୍ଜଙ୍କ ପ୍ରତ୍ୟେକ କାବ୍ୟ-କବିତା ସାହଚରୀର ସାହାଯ୍ୟକୁ ସତେ ଯେମିତି ସାଦରେ ଆମନ୍ତ୍ରଣ କରିଛି । ଠିକ୍ ଯେମିତି କହିଛି ଲାବଣ୍ୟବତୀ—

" ଚକ୍ଷା କେମନ୍ତ କରି, କରିବାମତ୍ତ କରି
ଗତିକି ଏମନ୍ତ ବିସ୍ମରୀ ସେ ସହଚରୀ
ଭବେ ବଞ୍ଚିଲେ ଏ କାଳକୁ
କଥାଥିବ କାଳ କାଳକୁ । "

ପୁନଶ୍ଚ ଲାବଣ୍ୟବତୀର ସ୍ୱପ୍ନଦର୍ଶନ ଏବଂ ସ୍ୱପ୍ନ-ଦର୍ଶନ ପର ଅବସ୍ଥାକୁ ଲକ୍ଷ୍ୟ କରି ସହଚରୀ ମାନଙ୍କର ଆଳାପ, ପାରସ୍ପରିକ ଆମୋଦ ପ୍ରମୋଦ, ବ୍ୟଙ୍ଗୋକ୍ତି, ବିଷ୍ଣୁ ଶାନ୍ତି ପାଇଁ ଶିବଙ୍କୁ ଯେଉଁଭଳି ସ୍ମରଣ କରିଛନ୍ତି ତାହା ଲକ୍ଷଣୀୟ ।

ଭଂଜୀୟ ନାୟିକାର ପ୍ରେମ ଦାମ୍ପତ୍ୟ ପ୍ରେମର ବହୁ ଉର୍ଦ୍ଧ୍ୱରେ । ସେ ପ୍ରେମରେ ବ୍ୟଭିଚାର ନାହିଁ କି ନାହିଁ ମଧ୍ୟ ଛଳନା, ବରଂ ରହିଛି କେବଳ ଏକାତ୍ମବୋଧତା ଏବଂ ନାରୀ ପୁରୁଷର ଅଭିନ୍ନ ଚେତନା । କାରଣ କବି କାବ୍ୟ ଜଗତରେ ଦ୍ୱିତୀୟ ସ୍ରଷ୍ଟା ; ତେଣୁ କୁହାଯାଉଛି – " ଅପାରେ କାବ୍ୟ-ସଂସାରେ କବିରେବ ପ୍ରଜାପତିଃ " ଭଳି ତା'ର ମନ ମୁତାବକ ଚରିତ୍ର ସେ ସୃଷ୍ଟି କରିବାର ସ୍ୱାଧୀନତା ପାଇଛି । ସେଥିପାଇଁ ନାରୀ ତା'ର ଦୃଷ୍ଟି ଏବଂ ସୃଷ୍ଟିରେ ହୋଇଛି ସର୍ବ ଉପମାର ଉପମାସ୍ଥଳୀ ।

ଆର୍ଯ୍ୟ ସଂସ୍କୃତି, ଐତିହ୍ୟ ତଥା ପରମ୍ପରାନୁଯାୟୀ ଭାରତୀୟ ନାରୀ ଅଗାଧ ପାଣ୍ଡିତ୍ୟରେ ପରିପୂର୍ଣ୍ଣା ଓ କଳାପ୍ରବଣା ବୋଲି ଯାହା ପ୍ରବନ୍ଧରେ ପୂର୍ବରୁ କୁହା-ଯାଇଛି ତା'ର ବାସ୍ତବ ରୂପାୟନ କରିଛନ୍ତି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କର ଲାବଣ୍ୟବତୀ, ସୀତା, ସୁଭଦ୍ରା, ରସିକ ହାରାବଳୀ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଗଣଙ୍କ ପ୍ରଗାଢ଼ ପାଣ୍ଡିତ୍ୟ ତଥା କଳାକୁଶଳତାର ପରିଚୟ ମଧ୍ୟରେ ।

ସାମନ୍ତୀୟ ବାତାବରଣ ଭିତରୁ ଆତ୍ମପ୍ରକାଶ କରିଥିବା ରୀତିଯୁଗ ସାହିତ୍ୟ ଓ ରୀତିଯୁଗୀୟ କବି-କଳ୍ପନାରେ ନାରୀ ଅସାଧାରଣ ସୌନ୍ଦର୍ଯ୍ୟମୟୀ, ବୈଚିତ୍ର୍ୟମୟୀ, ପ୍ରେମମୟୀ ଆଉ ରସମୟୀ ହୋଇ-ଥିଲେ ହେଁ ସାମାଜିକ ଜୀବନରେ ଆଦର୍ଶ ସ୍ଥାନୀୟା ନ ହୋଇ ବରଂ ଭୋଗ ବିଳାସ ସର୍ବସ୍ୱ ହୋଇ ପଡ଼ିଛି । ଇନ୍ଦ୍ରିୟ ସମ୍ଭୋଗ ଚିନ୍ତାଧାରା ଭିତରେ ରୀତି ଯୁଗୀୟ ପୁରୁଷ ନିଜର ସବୁ କିଛିକୁ ଭୁଲିଯାଇ ନାରୀ ପାଇଁ ଜୀବନ ସର୍ବସ୍ୱ ଉତ୍ସର୍ଗ କରିଛି । ଲାକ୍ଷାରସ ରଞ୍ଜିତ ତା' ପାଦତଳେ ସତ କିନ୍ତୁ ଭୁଲିଯାଇ ନାହିଁ ଭାରତୀୟ ଉଚ୍ଚ ପରମ୍ପରାର ଆଦର୍ଶକୁ । ବାସ୍ତବିକ୍ ଯୁଗର ପ୍ରାଣ ସ୍ପନ୍ଦନକୁ ଗ୍ରହଣ କରି କବି ସମ୍ରାଟ ନିଜର ଅଭୂତପୂର୍ବ କବି ପ୍ରତିଭା ଭିତରେ ଓ ଅସାଧାରଣ ଲେଖନୀ ମୁନରେ ନାରୀର ଯେଉଁ ସୁରମ୍ୟ- ମଞ୍ଜୁଳ ତଥା ମନୋଜ୍ଞ ଆଲେଖ୍ୟ ଅଙ୍କନ କରିଛନ୍ତି ବାସ୍ତବିକ୍ ତାହା କବିଙ୍କୁ " କବି ସମ୍ରାଟ " ର ଗୌରବରେ ବିମଣ୍ଡିତ କରିବା ସଙ୍ଗେ ସଙ୍ଗେ " ଭଞ୍ଜଙ୍କ କବିତା କେବଳ " ନାରୀ ଢକ୍ସନାରୀ – " ଅଶ୍ଳୀଳ-ଅବୋଧ୍ୟ " ଭଳି ବହୁ ସମାଲୋଚନାର ମୌନ ପ୍ରତିବାଦ ଜଣାଇଥାଏ କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ସହାୟକ ଗ୍ରନ୍ଥସୂଚୀ :—

୧ । ଓଡ଼ିଆ ସାହିତ୍ୟର ଇତିହାସ ସଂପର୍କରେ – ଡ : ହେମନ୍ତ କୁମାର ଦାସ ।
୨ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ – ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ ।
୩ । ଭଞ୍ଜ ସାହିତ୍ୟ ଏକ ଦିଗ୍‌ଦର୍ଶନ – ଉପେନ୍ଦ୍ର ନାୟକ ।
୪ । ରୀତି ବିଚାର ଓ ଭଂଜୀୟ କାବ୍ୟ କଳା – ଶ୍ରୀ ନିଶାମଣି ମିଶ୍ର ।
୫ । ଭଞ୍ଜ ସନ୍ଦର୍ଭ – ପଣ୍ଡିତ ଶ୍ରୀଧର ଶତପଥୀ ।
୬ । ଓଡ଼ିଆ ରୀତି କାବ୍ୟର ଭିତ୍ତି ଓ ଭୂତି – ଶ୍ରୀ ସୁରେନ୍ଦ୍ର କୁମାର ନାୟକ ।
୭ । ଆଲୋଚନା ପତ୍ର – ଡ : କ୍ଷେତ୍ରବାସୀ ନାୟକ ।
୮ । ଓଡ଼ିଆ ସାହିତ୍ୟର ଇତିହାସ – ଡ: ବୃନ୍ଦାବନ ଆଚାର୍ଯ୍ୟ ।
୯ । ଓଡ଼ିଆ ସାହିତ୍ୟର ମଧ୍ୟ-ଉତ୍ତର ପର୍ବ – ଶ୍ରୀ ସୁରେନ୍ଦ୍ର ମହାନ୍ତି ।
୧୦ । ଭଂଜୀୟ କାବ୍ୟାକୃତି ସମୂହ ।
୧୧ । Shakti & Her Episode - ( On the Basis of Ancient Indian Tradition and mythology. ) 1st Edn. - 1981.



Digitized by PPRACHIN, SOA

# Bhanjan Women : A Life Sketch

● Kanhu Charan Padhy

0. The poets of pre-Upendra age in Oriya literature have produced their works under direct and indirect influence of Sanskrit-literature. Also, Upendra says to take his work as 'Naisadha'.[1] So, it is clearly evident that the poet is a follower of the ideals of Sanskrit poetics. The poet has followed the path of his predecessons both in form and theme. Depiction of women isn't an exception to it. To say in brief, Indian literature is women-centred. So, there is nothing unnatural in it for the Bhanja-literature, nurished in this great tradition and its follower to a higher rank, to be so. Hence, it is inevitable for a true and impartial critic to discuss about the beauty, qualities and life-sketch of Bhanjan-women while delivering any opinion about Bhanja's works.

0.1. The life-sketches of the hero and heroine are the core of every Bhanjan-work. The presence of the heroine in it can't be avoided Further, in some works, the hero's presence is quite negligible and secondary to the heroine's only. The heroines in 'Kotibrahmanda Sundari.' 'Labanyabati', 'Premasudhanidhi', 'Subhadra Parinaya' and 'Bhababati' etc each is a princess. Sita, the heroine of Baidehisa Bilasa' and 'Abanarasataranga' is born from earth's crust. Again, she is the foster-child of King Janaka Only the heroines 'R a s a l e k h a' and Subarnnarekha' are Munikanya (daughter born to a saint on hermit) and minister's daughter respectively. Candrabali of puranic fame is the heroine of 'Kalakautuka'.

0 2. The greatness and distinction of the heroines in the imaginary works of Bhanja are quite a sumble from their names only. The name of each Bhanjan-heroine (of imaginary works) follows her beauty on qualities. The cone of most of the works is the heroine's love. So, the poet has endeavoured much towards the heroines' beauty, the most attractive element in a lover's part, while naming, viz. Kotibrahmanda Sundari, Labanyabati, Premasudhanidhi etc..

0.2 1. She is Kotibrahmanda Sundari (the most beautiful damsel in the crones of Universes) for none in the crones of universes shares equality with her in beauty.[2] The name Labanyabati is with the meaning 'receptacle of beauty'[3]. She is Premasudhanidhi due to the uncommon association of Prema (love) and Sudha (nector) in the two eyes of the nascent boby.[4] But the names Rasalekha and Bhababati are according to their parent's choice. The different names of Sita are adopted from the Puranas.[5] The name Subhadra, heroine in Subhadra Parinaya' is due to the birth environment [6]

0.2 1 1. On the whole, while giving names the Poet is much conscious towards the beauty, qualities and birth environment

of his heroines. It proves the sense of propriety and responsibility of the Poet while presenting his own opinion. It is again remarkable that his imaginary works bear the name of their respective heroines. Everywhere the Poet has shot two birds in a single bullet. The foresight of Upendra is too much astonishing while naming his work 'Premasudhanidhi.' It means an ocean of love-nector or a stainlessmoon of love. Like the sixteen KALAS of the moon the work contains sixteen cantoes. As every succeeding KALA of the moon is brighter, likely every canto of the poetry is more charming than the previous one. The name Kotibrahmanda Sundari is the outcome of the parent's pride for their daughter's beauty. Again, the work itself bears the sign of the poet's excellence and confidence.

1.0. Now, it seems right to discuss briefly the life-sketch of Bhanjan-heroines. Generally, the seven stages of their life are b i r t h, childhood, adolescence, youth, marriage and conjugal life, separation and re-union. Every stage is complementary to the rest.

1.1. Among Bhanjan-heroines someone is born to a fairy[7], the other has taken birth by the grace of deity[8] and another due to Indra's curse[9]. Only the Puranic heroine Sita has taken birth from the earth's crust[10]. The rest are born to their parents like any common women. Description of previous birth of the heroes and heroines is a Puranic style in Oriya-literature. It was prevailing in Pre-Upendra Oriya poetry Upendra has brought a change in this fashion. The description of previous birth is found only in 'Rasikaharabali', 'Labanyabati' and 'Kotibrahmanda Sundari'. In case of 'Labanyabati' the poet may be influenced by 'Rudrasudhanidhi' on the description of Ganesh's birth in 'Padmapurana'. But, what may be behind their birth, the Bhanjan-heroines have born to parents while their anxiety for a daughter.[11] She is the princess (in most cases) brought up with much care. Never she knows what s o r r o w is. What melancholy she feels is only due to the absence of a lover-husband's association. So no heroine is in grief or suffering. The poet has given birth each heroine in an auspicious moment as supported by astrology.[12] Also he has given their horoscope. The existence of planets in many auspicious occasions of their life is found in his works.[13] By this horoscope only the poet has controlled their life, beauty and qualities from the very beginning.[14]

1.2. The gestures of childhood touch even the most cruel man's heart. How can't it get shape in the stylus of Upendra ? So, in childhood the cry of his heroine is the humming of cuckoo in the mango-grove.[15] Her sleep in the swing is the sleep of Goddess Durga in silver-bed.[16] In her face are the brightness of moon, scent of lotus, gloss of mirror[17], camphor's chill and whiteness.[18] The heroine's dark curly hairs seem as moss on lotus bud.[19] In her wavy looks is the splendour of she-deer.[20] Her blue eyes defeat the blue-lotus,[21] and the hairs-on-eye-brows snatch away it's scent forcibly.[22] The heroine's body is softer than butter and 'Sirisa flower'.[23] Her lustre is brighter than Gold,[24] Campaka[25] and more beautiful than the glittering of lightning.[26] In her lips is the redness of coral,[27] in voice the

